# ନିଜେ କଲେ ଜାଣିବ

(ପରୀକ୍ଷାମୂଳକ ବିଜ୍ଞାନ ଶିକ୍ଷା)

ସୁରେନ୍ଦ୍ର ନାଥ ସାହୁ



ସୁଧା ପ୍ରକାଶନ
ବାଖରାବାଦ୍, କଟକ

# ନିଜେ କଲେ ଜାଣିବ

*ଲେଖକ :*
**ସୁରେନ୍ଦ୍ର ନାଥ ସାହୁ**

*ପ୍ରକାଶକ :*
**ସୁଧା ପ୍ରକାଶନ**
ବାଖରାବାଦ୍, କଟକ

*ପ୍ରଚ୍ଛଦପଟ :*
**ବାଳକୃଷ୍ଣ ନନ୍ଦ**

*ଡି.ଟି.ପି. ଓ ମୁଦ୍ରଣ :*
ଗ୍ରାଫିକ ଆର୍ଟ ଅଫସେଟ୍ ପ୍ରେସ୍
ନୂଆପାଟଣା, କଟକ

ପ୍ରଥମ ସଂସ୍କରଣ : **୨୦୦୪**

ପ୍ରଥମ ପୁନଃମୁଦ୍ରଣ : ୨୦୦୭

ISBN 81-7704-062-6

ମୂଲ୍ୟ : **ଟ୨୦**

# ସୂଚନା

ଗଛରୁ ଫଳଟିଏ ଝଡ଼ିବା ଏକ ସାଧାରଣ ଘଟଣା । ବୈଜ୍ଞାନିକ ନିଉଟନଙ୍କ ଦୃଷ୍ଟିରେ ଏ ଘଟଣାଟି ଥିଲା କିନ୍ତୁ ଅସାଧାରଣ । କୌଣସି ସାଧାରଣ ଘଟଣାକୁ ଅସାଧାରଣ ଦୃଷ୍ଟିରେ ଚିନ୍ତା କରିବା ଏବଂ ସେ ସଂପର୍କରେ ଅଧିକ ଜାଣିବାର କୌତୂହଳ ହିଁ ମଣିଷକୁ ଟାଣି ନିଏ ବିଜ୍ଞାନ ଜଗତକୁ ।

ଏପରି ଅସଂଖ୍ୟ ଘଟଣା ପ୍ରତି ମୁହୂର୍ତ୍ତରେ ଆମ ଚାରିପାଖରେ ଘଟିଚାଲିଛି । ବେଳେବେଳେ ଆମ ମନରେ ପ୍ରଶ୍ନ ଉଠେ, ଏମିତି କାହିଁକି ହୁଏ ? ନିଆଁରେ ପାଣି ଢାଳିଲେ ଲିଭିଯାଏ କାହିଁକି ? ଶୀତଦିନେ ଆମକୁ ଗରମ ପୋଷାକ ଭଲଲାଗେ କାହିଁକି ? ଆକ୍‌ସିଲିଟର ମୋଡ଼ିଦେଲେ ଗାଡ଼ି ଗଡ଼ିଯାଏ କାହିଁକି ? – ଏମିତି ଅନେକ ପ୍ରଶ୍ନ । ଏସବୁ ପ୍ରଶ୍ନର ଉତ୍ତର ଆମେ ବହି ପଢ଼ିଲେ ଅବଶ୍ୟ ଜାଣି ପାରିବା; କିନ୍ତୁ ବିଜ୍ଞାନ ଏପରି ଏକ ପାଠ, କେବଳ ବହି ପଢ଼ିଲେ ହିଁ ସବୁ ବୁଝିହୁଏନି । ସେଥିପାଇଁ କେତେକ ସ୍ଥଳରେ ଦରକାର ହୁଏ ପରୀକ୍ଷାମୂଳକ ବିଶ୍ଳେଷଣ ।

ଯେଉଁ ପିଲାମାନେ ପରୀକ୍ଷାମୂଳକ ବିଜ୍ଞାନ ଶିକ୍ଷା ପ୍ରତି ଆଗ୍ରହୀ 'ନିଜେ କଲେ ଜାଣିବ' ବହିଟି ସେମାନଙ୍କ ପାଇଁ ଲେଖାଯାଇଛି । ସଠିକ ଧାରା ଓ ସାବଧାନତା ସହକାରେ ପରୀକ୍ଷାଗୁଡ଼ିକୁ କରିବା ଉଚିତ । ପିଲାମାନେ ଏଥିରୁ ଜ୍ଞାନ ସହିତ ଆନନ୍ଦ ଆହରଣ କରିପାରିଲେ ଲେଖକର ଶ୍ରମ ସାର୍ଥକ ହେବ ।

**ଲେଖକ**

# ସୂଚୀପତ୍ର





# ଅଜା-ନାତିଙ୍କ ବିଜ୍ଞାନ ଖେଳ

ଦିନେ ସୋମୁ ତା' ଅଜାଙ୍କ ସାଙ୍ଗରେ ବଜାରକୁ ଯାଇଥିଲା । ସୋମୁର ପ୍ରିୟ ଖେଳନା ହେଲା - 'ବେଲୁନ୍' । ଅଜା ତା' ପାଇଁ ଗୋଟେ ସୁନ୍ଦର ଦୁଇଟଙ୍କିଆ ବେଲୁନ୍ କିଣାଇ ଦେଲେ । ଆପଲ୍ ଆକାରର ଖୁବ୍ ବଡ଼ ଏବଂ ଲାଲ୍ ରଙ୍ଗର ବେଲୁନ୍‌ଟାଏ । ସୋମୁର ଖୁସି କହିଲେ ନସରେ । ତାକୁ ଭଲ ଚିତ୍ର ଆଙ୍କିଆସେ । ସେ ଘରେ ପହଞ୍ଚିଲା । ବହି ବ୍ୟାଗ୍‌ରୁ ରଙ୍ଗିନ୍ ସ୍କେଚ୍‌ପେନ୍ ବାହାର କରି ବେଲୁନ୍ ଉପରେ ଚିତ୍ର ଆଙ୍କିବାକୁ ଲାଗିଲା । ପ୍ରଜାପତି, ଫୁଲ, ମାଛ ଇତ୍ୟାଦିର ସୁନ୍ଦର ସୁନ୍ଦର ଚିତ୍ର ।

ତା' ବୋଉ ଭିତରୁ ଥାଇ ପାଟି କଲେ, ''କ'ଣ ସୋମୁ... ଏଯାଏଁ ଖେଳ ଚାଲିଛି ! ସ୍କୁଲବେଳ ହେଲାଣି ଜାଣି ପାରୁନୁ ?''

ସୋମୁ ଦେଖିଲା, ଦଶଟା ବାଜିଗଲାଣି । ତରତରରେ ସେ ବେଲୁନ୍‌ଟାକୁ ନେଇ ଅଗଣାରେ ବନ୍ଧା ହୋଇଥିବା ତାର ଦେହରେ ଝୁଲାଇ ଦେଇ ସ୍କୁଲକୁ ଚାଲିଗଲା ।

ଦି'ପହରରେ ସ୍କୁଲରୁ ଫେରିଲା । ଘରେ ଆସି ପାଦ ଦେଇଛି କି ନାହିଁ, 'ଠୋ......' କିନା ଗୋଟେ ଶବ୍ଦରେ ଚମ୍‌କି ପଡ଼ିଲା ସୋମୁ । ଅଗଣାକୁ ଧାଇଁ ଯାଇ ଦେଖେ ତ, ବେଲୁନ୍‌ଟା ଫାଟିଯାଇଛି । ତାକୁ ବଡ଼ ଦୁଃଖ ଲାଗିଲା । ଏତେ ବେଗି ବେଲୁନ୍‌ଟା ଫାଟିଯିବ ବୋଲି ସେ ଭାବି ନଥିଲା । ସଙ୍ଗେସଙ୍ଗେ ସେ ଘଟଣାଟା ଯାଇ ଅଜାଙ୍କୁ କହିଲା । ଅଜା ବାରଣ୍ଡାରେ ବସି ପେପର ପଢୁଥିଲେ । ସେ କହିଲେ, ''ତୋରି ବୋକାମି ଯୋଗୁଁ ବେଲୁନ୍ ଫାଟିଗଲା ।''

ସୋମୁ ଆଶ୍ଚର୍ଯ୍ୟରେ ପଚାରିଲା, ''ମୁଁ କି ଭୁଲ କଲି କହିଲ ଅଜା ?'' ଅଜା କହିଲେ, ''ଆରେ...... ଅଗଣାରେ ଖରା ପଡୁଛିଟି ? ଖରା ତେଜ କେତେ ହେଲାଣି ଦେଖିଲୁ । ଏମିତି ଟାଣ ଖରାରେ ବେଲୁନ୍ ଝୁଲେଇଲେ ଫାଟିଯିବନି ?''

ସୋମୁ କାନମୁଣ୍ଡା କୁଣ୍ଡେଇ କୁଣ୍ଡେଇ କହିଲା, ''ହଁ ଅଜା, ଭୁଲ ହେଇଗଲା-

ମୁଁ ବି ଶୁଣିଛି, ବେଲୁନ୍ ବେଶି ସମୟ ଖରାରେ ରହିଲେ ଫାଟିଯାଏ । ହେଲେ ଅଜା, ଏମିତି କାହିଁକି ହୁଏ କହିଲ ?''

ଅଜା ପେପରଟାକୁ ଚଉତି ଟେବୁଲ ଉପରେ ରଖି କହିଲେ, ''ତା' ମୂଳରେ ଗୋଟେ ବୈଜ୍ଞାନିକ କାରଣ କାମ କରୁଛି । ବାୟୁ ଗରମ ହେଲେ ପ୍ରସାରିତ ହୁଏ । ବେଲୁନ୍‌ରେ ଯେତେବେଳେ ଖରାତେଜ ପଡ଼ିଲା, ତା' ଭିତରେ ଥିବା ବାୟୁ ଗରମ ହୋଇ ପ୍ରସାରିତ ହେବାକୁ ଲାଗିଲା । ବେଲୁନ୍ ତ ଆଗରୁ ପ୍ରସାରିତ ହୋଇ ରହିଛି । ଗରମ ବାୟୁ ଯେତେବେଳେ ତାକୁ ଅଧିକ ପ୍ରସାରିତ କରିବାକୁ ଚେଷ୍ଟା କଲା, ବେଲୁନ୍‌ଟି ଫାଟିଗଲା ।''

ସୋମୁ ପୁଣି ପଚାରିଲା, ''ଆଚ୍ଛା... ଅଜା, ଗରମ ହେଲେ ବାୟୁ ସତରେ ପ୍ରସାରିତ ହୁଏ ?''

ଅଜା ହସି ହସି କହିଲେ, ''ଆରେ.... ବାୟୁ ଗରମ ହେଲେ ପ୍ରସାରିତ ଯେମିତି ହୁଏ ଥଣ୍ଡା ହେଲେ ସେମିତି ସଂକୁଚିତ ବି ହୁଏ ।''

କିନ୍ତୁ ଅଜା, ବାୟୁକୁ ତ ଆମେ ଦେଖି ପାରୁନେ କି ଛୁଇଁ ପାରୁନେ, ସେ ସଂକୁଚିତ ପ୍ରସାରିତ ହୁଏ ବୋଲି ଜାଣିବା କେମିତି ? ସୋମୁ ପୁଣି ପଚାରିଲା ?

ଅଜା କହିଲେ, ''ଠିକ୍ ଅଛି, ଜାମାପଟା ବଦଳାଇ, ଖିଆପିଆ ସାରି ତୁ ଆସ୍ । ମୁଁ ତୋତେ ଗୋଟେ ଚମତ୍କାର ବିଜ୍ଞାନ ଖେଳ ଦେଖାଇବି । ସେଥିରୁ ତୁ ସବୁକଥା ବୁଝି ପାରିବୁ ।''

ସୋମୁ ଯାଇ ଚଟାପଟ୍ ସବୁକାମ ଶେଷ କରି ଅଧଘଣ୍ଟା ଭିତରେ ଆସି ଅଜାଙ୍କ ପାଖରେ ହାଜର । ଅଜା ସେତେବେଳକୁ ଦୁଇ ବାଲଟି ପାଣି, ଗୋଟେ ସରୁ ମୁହଁବାଲା ବୋତଲ ଏବଂ ଗୋଟେ ବେଲୁନ୍ ଯୋଗାଡ଼ କରି ସୋମୁକୁ ଅପେକ୍ଷା କରିଥାନ୍ତି । ସୋମୁ ଦେଖିଲା, ଦୁଇଟା ଅଲଗା ଅଲଗା ବାଲଟିରେ ପାଣି ଅଛି । ଗୋଟାକରେ ଖଣ୍ଡ ଖଣ୍ଡ ବରଫ ଭାସୁଛି ଏବଂ ଅନ୍ୟଟିରୁ ବାହାରୁଛି ଗରମ ବାମ୍ଫ । ଅଜା ବୁଝାଇ ଦେଲେ, ''ଦେଖ୍ ସୋମୁ, ଏଥିରେ ଗରମ ପାଣି ଏବଂ ଆର ବାଲଟିରେ ଅଛି ଥଣ୍ଡା ପାଣି । ପ୍ରଥମେ ତୁ ସେ ବୋତଲଟାକୁ ନେଇ ଥଣ୍ଡାପାଣି ବାଲ୍‌ଟିରେ କିଛି ସମୟ ବୁଡ଼ାଇ ରଖ ।'' ସୋମୁ ସେୟା କଲା । ପ୍ରାୟ ଦୁଇ ମିନିଟ୍ ପରେ ଅଜା ତାକୁ ବାଲଟି ଭିତରୁ ବାହାର କରି ଆଣିଲେ । ସୋମୁ ହାତ ମାରି ଦେଖିଲା, ବୋତଲଟା ଖୁବ୍ ଥଣ୍ଡା ଲାଗୁଛି । ଅଜା ବୋତଲ ଭିତରୁ ପାଣିତକ ଅଜାଡ଼ି ଦେଲେ । ତା'ପରେ ସେ ବେଲୁନ୍‌ର ମୁହଁକୁ ଜୋର୍‌ରେ ଟାଣି

ବୋତଲ ମୁହଁରେ ଖୁବ୍ କଷି କରି ବାନ୍ଧିଦେଲେ । ସୋମୁକୁ କହିଲେ, "ବୋତଲକୁ ନେଇ ଏବେ ଗରମ ପାଣି ଭିତରେ ବୁଡ଼ାଇ ରଖ, କିନ୍ତୁ ହୁସିଆର୍ ! ବୋତଲକୁ ଠିଆ କରି ଏମିତି ରଖିବୁ, ଯେମିତିକି ବୋତଲ ବେକ ପର୍ଯ୍ୟନ୍ତ ପାଣିରେ ବୁଡ଼ି ରହିବ । ବେଲୁନ୍‌କୁ ଆଦୌ ପାଣି ଲାଗିବ ନାହିଁ ।"

ସୋମୁ ସତର୍କରେ ବୋତଲକୁ ଗରମ ପାଣି ବାଲ୍‌ଟିରେ ବୁଡ଼ାଇ ଧରିଲା । ଅଳ୍ପ ସମୟ ପରେ ଦେଖାଗଲା, ବେଲୁନ୍‌ଟା ଧୀରେ ଧୀରେ ଫୁଲିବାରେ ଲାଗିଛି । ସୋମୁ ଆଶ୍ଚର୍ଯ୍ୟ ! ଏମିତି କାହିଁକି ହେଲା ?

ଅଜା ବୁଝାଇ ଦେଲେ, "ଦେଖ୍......ବୋତଲଟା ଯେତେବେଳେ ଥଣ୍ଡାଥିଲା ତା' ଭିତରେ ବାୟୁ ସଂକୁଚିତ ଅବସ୍ଥାରେ ଥିଲା । ସେତିକିବେଳେ ଆମେ ତା' ମୁହଁରେ ବେଲୁନ୍‌ଟିକୁ ବାନ୍ଧିଦେଲେ । ତା'ପରେ ତାକୁ ଗରମ ପାଣିରେ ବୁଡ଼ାଇଲେ । ଜଳର ଉତ୍ତାପ ବୋତଲ ମଧ୍ୟ ଦେଇ ବାୟୁକୁ ସଂଚାରିତ ହେବା ଫଳରେ ତା' ଭିତରେ ଥିବା ବାୟୁ ଗରମ ହେଲା । ଗରମ ବାୟୁ ଯେତେବେଳେ ପ୍ରସାରିତ ହେଲା ତାକୁ ଅଧିକ ସ୍ଥାନ ଦରକାର ପଡ଼ିଲା । କିନ୍ତୁ ବୋତଲ ଭିତରେ ତ' ଅଧିକ ସ୍ଥାନ ନାହିଁ । ତେଣୁ ବାୟୁ ବୋତଲ ମୁହଁ ଦେଇ ବାହାରକୁ ଆସିଲା । ବୋତଲ ମୁହଁରେ ବେଲୁନ୍ ବନ୍ଧା ହୋଇଥିବା ହେତୁ ବାୟୁ ବେଲୁନ୍ ଭିତରେ ପଶି ତାକୁ ଫୁଲାଇଲା । ବାୟୁ ଗରମ ହେଲେ ପ୍ରସାରିତ ହୁଏ ବୋଲି ଏ ପରୀକ୍ଷାରୁ ଜାଣି ହେଲା ତ ?" ଅଜା ପଚାରିଲେ ।

ସୋମୁ ଉତ୍ତର ଦେଲା, "ହଁ ଅଜା....ତମେତ ବଡ଼ ସହଜରେ ପରୀକ୍ଷା କରି ବୁଝାଇ ଦେଲ ।"

ଅଜା ପୁଣି କହିଲେ, "ଆମେ ୟା'ର ଠିକ୍ ବିପରୀତ ପରୀକ୍ଷାଟି କଲେ ଜାଣି ପାରିବା, ବାୟୁ ଥଣ୍ଡା ହେଲେ କେମିତି ସଂକୁଚିତ ହୁଏ । ସେ ପରୀକ୍ଷାଟି କରି ତୁ ମୋତେ ଦେଖାଇ ପାରିବୁ ?"

ସୋମୁ ଟିକିଏ ଚିନ୍ତା କରି କହିଲା, ଠିକ୍ ଅଛି ।

ପ୍ରଥମେ ସେ ବୋତଲ ମୁହଁରୁ ବେଲୁନ୍‌ଟିକୁ ଖୋଲିଦେଲା । ବୋତଲକୁ ଗରମ ପାଣି ଭିତରେ କିଛି ସମୟ ବୁଡ଼ାଇ ରଖିଲା । ତା'ପରେ ସେ ବୋତଲରୁ ପାଣି ଅଡାଡ଼ି ଦେଇ ବେଲୁନ୍‌କୁ ପୂର୍ବପରି ବୋତଲ ମୁହଁରେ ବାନ୍ଧିଦେଲା । ତା'ପରେ ସେ ବୋତଲକୁ ନେଇ ଥଣ୍ଡା ପାଣିରେ ବେକ ପର୍ଯ୍ୟନ୍ତ ବୁଡ଼ାଇ ରଖିଲା । ଅଳ୍ପ ସମୟ ପରେ ଦେଖାଗଲା,

ବେଲୁନ୍‌ଟି ଫୁଲିବା ପରିବର୍ତ୍ତେ ଧୀରେ ଧୀରେ ସଂକୁଚିତ ହୋଇ ବୋତଲ ଭିତରକୁ ପଶିବାରେ ଲାଗିଛି । ଦୁଇ ମିନିଟ୍ ଭିତରେ ଦେଖିବା ବେଳକୁ ବେଲୁନ୍‌ଟା ଯାଇ ପୂରାପୂରି ବୋତଲ ଭିତରେ ।



ଅଜା କହିଲେ, "ପରୀକ୍ଷାଟି ତ ଠିକ୍ ଠିକ୍ କଲୁ । ଏବେ ବୁଝାଇଲୁ, ଏମିତି କାହିଁକି ହେଲା ?"

ସୋମୁ ବୋତଲକୁ ତଳେ ଥୋଇ ଦେଇ, ହାତ ପୋଛି ପୋଛି କହିଲା, "ପ୍ରଥମେ ମୁଁ ବୋତଲକୁ ଯେତେବେଳେ ଗରମ ପାଣିରେ ବୁଡ଼ାଇଲି, ତା' ଭିତରର ବାୟୁ ଗରମ ହୋଇ ପ୍ରସାରିତ ହେଲା । ବୋତଲର ମୁହଁ ଖୋଲାଥିବା ହେତୁ କିଛି ପରିମାଣର ବାୟୁ ବୋତଲ ବାହାରକୁ ଚାଲିଗଲା । ସେତିକିବେଳେ ମୁଁ ତା' ମୁହଁରେ ବେଲୁନ୍‌ଟିକୁ ବାନ୍ଧି ଦେଲି । ତା'ପରେ ବୋତଲକୁ ଥଣ୍ଡା ପାଣିରେ ବୁଡ଼ାଇ ରଖିଲି । ଗରମ ବାୟୁ ଯେତେବେଳେ ଥଣ୍ଡା ହେଲା ସଂକୁଚିତ ହୋଇ କମ୍ ସ୍ଥାନରେ ରହିଗଲା । ସେତିକିବେଳେ ଅବଶିଷ୍ଟ ସ୍ଥାନ ପୂରଣ କରିବା ପାଇଁ ବାହାରର ବାୟୁ ବୋତଲ ଭିତରେ ପଶିବାକୁ ଚେଷ୍ଟା କଲା । କିନ୍ତୁ ବୋତଲ ମୁହଁରେ ତ ବେଲୁନ୍ ବନ୍ଧା ହୋଇଛି... ପଶିବ କେମିତି? ତେଣୁ ବେଲୁନ୍‌କୁ ଠେଲି ବାୟୁ ବୋତଲ ଭିତରେ ପଶିଲା । ...କ'ଣ ଏୟା ତ ଅଜା ?"

ଅଜା ସୋମୁର ପିଠି ଥାପୁଡ଼ାଇ କହିଲେ, ଠିକ୍ ଠିକ୍..... କାରଣଟା ଠିକ୍ ବୁଝିଛୁ ଏବଂ ବୁଝାଇ ପାରିଛୁ ମଧ୍ୟ । ଏଣିକି ଆଉ ବେଲୁନ୍ ଆଣିଲେ ବେଶି ସମୟ ଖରାରେ ରଖିବୁନିଟି?" ସୋମୁ ହସି ହସି ଖେଳିବାକୁ ଲାଗିଲା ।

❐

# ମିନି ବିଜୁଳି କେନ୍ଦ୍ର

ଥରେ ବିଜ୍ଞାନ ସାର୍ ପିଲାମାନଙ୍କୁ ପଚାରିଲେ, ''କହିପାରିବ ପିଲେ, ଆମେ ବ୍ୟବହାର କରୁଥିବା ବିଜୁଳି ଶକ୍ତି କେଉଁଠୁ ମିଳୁଛି ?''

ପିଲାଙ୍କ ମଧ୍ୟରୁ କିଏ କହିଲା ପାଣିରୁ, କିଏ କହିଲା ସୌରଶକ୍ତିରୁ, କିଏ କହିଲା ଗ୍ୟାସ୍‌ରୁ, ଆଉ କିଏ କହିଲା ପବନ ଚକ୍ରିରୁ । ଅମିତ ଶେଷରେ କହିଲା, ''ସାର୍, ଆମେ ବ୍ୟବହାର କରୁଥିବା ଅଧିକାଂଶ ବିଜୁଳି ଶକ୍ତି ମିଳୁଛି 'କୋଇଲା'ରୁ ।''

ସାର୍ କହିଲେ, ସାବାସ୍ ! ଅମିତ୍ ଠିକ୍ କହିଛି । ଅନ୍ୟମାନଙ୍କ ଉତ୍ତର ଠିକ୍ ହେଲେ ମଧ୍ୟ କୋଇଲାଠୁ ବାହାରୁଥିବା ବିଜୁଳିଶକ୍ତିର ବ୍ୟବହାର ସବୁଠୁ ଅଧିକ । ତେଣୁ ଅମିତର ଉତ୍ତର ପୂରାପୂରି ଠିକ୍ । ଆଚ୍ଛା ଅମିତ୍, କହି ପାରିବ, କୋଇଲା ଦ୍ୱାରା ବିଦ୍ୟୁତ୍ ଶକ୍ତି କିପରି ବାହାର କରାଯାଏ ?

ଅମିତ୍ କହିଲା, ନା' ସାର୍, ସେ ବିଷୟରେ ମୁଁ ଜାଣିନି । କିନ୍ତୁ ଆମର ଜଣେ ଜେଜେ ତାଳଚେର ବିଦ୍ୟୁତ କେନ୍ଦ୍ରରେ କାମ କରନ୍ତି । ଏ ବର୍ଷ ଖରା ଛୁଟିରେ ମୁଁ ସେଠାକୁ ଯିବି ବୋଲି ଭାବିଛି । କୋଇଲାଖଣି ଏବଂ ବିଦ୍ୟୁତ କେନ୍ଦ୍ର ଆଦି ବୁଲି ଦେଖିବାକୁ ମୋର ଭାରି ଇଚ୍ଛା ।



ସାର୍ କହିଲେ, ''ଠିକ୍ ଅଛି, ତୁମେ ଛୁଟିରେ ଜେଜେଙ୍କ ଘରକୁ ଯାଇ ବିଦ୍ୟୁତ କେନ୍ଦ୍ର ବୁଲି ଦେଖି ଆସିଲେ କୋଇଲାରୁ କିପରି ବିଦ୍ୟୁତ ବାହାରୁଛି, ତୁମ ସାଙ୍ଗମାନଙ୍କୁ ବୁଝାଇ ଦେବ ।''



ସତକୁ ସତ ଖରାଛୁଟିରେ ଅମିତ୍‌କୁ ନେଇ ତା' ବାପା ଜେଜେଙ୍କ ପାଖରେ ଛାଡ଼ି ଆସିଲେ । ସ୍କୁଲରେ ହୋଇଥିବା ସେଦିନର ଆଲୋଚନା ବିଷୟରେ ଅମିତ୍ ତା' ଜେଜେଙ୍କୁ କହିଲା । ଜେଜେ ଖୁସିରେ କହିଲେ, ''ଠିକ୍ ଅଛି, କାଲି ମୁଁ ତୋତେ ନେଇ ଆମ ବିଦ୍ୟୁତ କେନ୍ଦ୍ର ବୁଲାଇ ଆଣିବି । ହେଲେ ଅମିତ୍, କାରଖାନା ବୁଲି ଦେଖିବା ଆଗରୁ ସେ ସଂପର୍କରେ ତୋର ଗୋଟେ ମୋଟାମୋଟି ଧାରଣା ରହିବା ଦରକାର । ନହେଲେ ଅନ୍ଧ ହାତୀ ଦେଖିବା ପରି ସବୁ ଦେଖିବୁ ସିନା କିଛି ବୁଝି ପାରିବୁନି । କାଲି ସକାଳେ ଆମେ ବସି ଏ ବିଷୟରେ ଆଲୋଚନା କରିବା ଏବଂ ଉପରଓଳି କାରଖାନା ବୁଲିବାକୁ ଯିବା ।''

ପରଦିନ ସକାଳେ ଜେଜେ-ନାତି ଦୁହେଁ ସଅଳ ସଅଳ ନିତ୍ୟକର୍ମ ସାରି ଦେଇ ଆଲୋଚନାରେ ବସିଲେ । ଅମିତ୍ ଦେଖିଲା, ଜେଜେ ଗୋଟେ ବିଚିତ୍ର ଯନ୍ତ୍ର ଆଣି ପାଖରେ ରଖିଛନ୍ତି । ମନେ ହେଉଥିଲା ଗୋଟେ ଟେବୁଲ ଫେନ୍ । ଇଂରାଜୀ ଅକ୍ଷର 'A' ପରି ଗୋଟେ ଷ୍ଟାଣ୍ଡ ଉପରେ ଫ୍ୟାନର ଚକିଟା ଲାଗିଥିଲା । ତା' ଦେହରେ ଖଞ୍ଜା ହୋଇଥିଲା ପତଳା ଟିଣର ଛଅଟି 'ବ୍ଲେଡ୍' । ମଝିରେ 'ଡାଇନାମୋ' ପରି ଛୋଟ ଯନ୍ତ୍ରଟାଏ । ତା' ଭିତରୁ ଦୁଇଟି ତାର ବାହାରି ଉପରେ ଲାଗିଥିବା ଗୋଟେ ଟର୍ଚ୍ଚ-ବଲବ୍ ସହିତ ସଂଯୋଗ

କରାଯାଇଥିଲା । ସେପଟେ ଗ୍ୟାସ୍ ଚୁଲା ଉପରେ ପ୍ରେସ୍‌ର କୁକୁରଟା ବସି ସଁ..... ସଁ.... ଶବ୍ଦ କରୁଥାଏ ।

ଅମିତ୍ କିଛି ପଚାରିବା ଆଗରୁ ଜେଜେ ଆରମ୍ଭ କଲେ, ''ଆଚ୍ଛା ଅମିତ୍, ଓଡ଼ିଶାରେ କୋଇଲାଭିତ୍ତିକ ବିଜୁଳି କେନ୍ଦ୍ର ବା ତାପଜ ବିଦ୍ୟୁତ୍ କେନ୍ଦ୍ର ଅଛି ମାତ୍ର ଦୁଇଟା । ସେ ଦୁଇଟାଯାକ ଏଇ ତାଳଚେରରେ କାହିଁକି ବସିଛି କହିଲୁ ?''

ଅମିତ୍ କହିଲା, ''ଏଠାରେ ପ୍ରଚୁର କୋଇଲା ମିଳେ, ସେଥିପାଇଁ ।'' ''ହଁ, ଠିକ୍ କହିଛୁ, ବିଦ୍ୟୁତ୍ ଉତ୍ପାଦନ ପାଇଁ ମୂଳ ଆବଶ୍ୟକତା ହେଉଛି କୋଇଲା ଏବଂ ପାଣି । ଆମର ଏଠାରେ ଛୋଟବଡ଼ ପ୍ରାୟ ବାଇଶିଟି କୋଇଲା ଖଣି ଅଛି ଏବଂ ସେଥିରୁ କୋଇଲା ବାହାରୁଛି । ପରେ ମୁଁ ତୋତେ କୋଇଲାଖଣି ନେଇ ବୁଲାଇ ଆଣିବି । ଆମ ବିଦ୍ୟୁତ୍ କେନ୍ଦ୍ରକୁ କୋଇଲା ଆସୁଛି ଜଗନ୍ନାଥ କୋଇଲା ଖଣିରୁ । ପାଣି ଆସୁଛି ବ୍ରାହ୍ମଣୀ ନଦୀରୁ । ଏବେ ମୁଁ କହୁଛି କୋଇଲାରୁ ବିଜୁଳିଶକ୍ତି କିପରି ଉତ୍ପାଦନ କରାଯାଏ, ଶୁଣ ।''

''ପ୍ରଥମେ ଖଣିରୁ କୋଇଲା ଅଣାଯାଏ । କାରଖାନାର କୋଇଲା ଭଣ୍ଡାର ବା ବଙ୍କରରେ ତାହା ଜମା ହୁଏ । ବଙ୍କରରୁ ଅଳ୍ପ ଅଳ୍ପ କରି କୋଇଲା ଖସି 'କୋଲ୍‌ମିଲ୍'କୁ ଯାଏ । 'କୋଲ୍‌ମିଲ୍' କହିଲେ, ଖୁବ୍ ବଡ଼ ଆକାରର ପୁରୁଣା ଚକି ପରି ଯନ୍ତ୍ର । ସେଠାରେ କୋଇଲାକୁ ପୂରା ଚୂନା କରାଯାଏ । ଚୂନା କୋଇଲାକୁ ପଠାଯାଏ ବଏଲରକୁ । ବଏଲର କହିଲେ ଖୁବ୍ ବଡ଼ ଜଳନ୍ତା ଚୁଲା । ଗୋଟେ ଗୋଟେ ଚୁଲା ତିନି/ଚାରି ମହଲା କୋଠା ଆକାରର । ତା' ଭିତରେ ଚୂନା କୋଇଲା ପଡୁଥାଏ, ଅମ୍ଳଜାନ ଛଡ଼ା ଯାଉଥାଏ ଏବଂ ଦିନରାତି ନିଆଁ ଜଳୁଥାଏ । ତା' ଭିତରେ ପୁଣି ଅନେକ ପାଣି ପାଇପ୍ ଅଙ୍କେଇ ବଙ୍କେଇ ଖଞ୍ଜା ହୋଇଥାଏ । ପାଇପ୍ ଭିତରେ ଗୋଟିଏ ପାଖରୁ ପାଣି ପଶେ ଏବଂ ଅନ୍ୟପଟେ ବାହାରେ । କିନ୍ତୁ ବାହାରିବା ବେଳକୁ ବଏଲର ନିଆଁର ଉତ୍ତାପ ଯୋଗୁଁ ପାଣି ବାଷ୍ପରେ ପରିଣତ ହୋଇ ସାରିଥାଏ । ସେ ବାଷ୍ପକୁ ଅତି ଶକ୍ତିଶାଳୀ ପାଇପ୍ ସାହାଯ୍ୟରେ ପଠାଯାଏ 'ଟର୍ବାଇନ୍' କକ୍ଷକୁ । ବାଷ୍ପର ଚାପ ବଳରେ 'ଟର୍ବାଇନ୍' ଚକ୍ର ଘୂରିବାକୁ ଲାଗେ । ଟର୍ବାଇନ୍ ସହିତ ସଂଯୋଗ ଥାଏ ଜେନେରେଟର୍ । ତୁ ସାଇକେଲ ଡାଇନାମୋ ଦେଖିଥିବୁ, ଜେନେରେଟରର କାମ ଠିକ୍ ଡାଇନାମୋ ପରି, କିନ୍ତୁ ଅତି ଶକ୍ତିଶାଳୀ । ଟର୍ବାଇନ୍ ଘୂରିଲେ

ଜେନେରେଟର ଘୂରେ ଏବଂ ବିଜୁଳିଶକ୍ତି ଉତ୍ପାଦନ କରେ । ମୋଟାମୋଟି ଉପରେ ଏ ହେଉଛି ଗୋଟେ ତାପଜ ବିଦ୍ୟୁତ କେନ୍ଦ୍ରର ଉତ୍ପାଦନ ପ୍ରକ୍ରିୟା । ଏବେ ଏ ଚିତ୍ରଟାକୁ ଦେଖିଲେ ଆହୁରି ସହଜରେ ସବୁ ବୁଝିପାରିବୁ । ଏହା କହି ଜେଜେ ତାକୁ ଗୋଟେ ଚିତ୍ର ଦେଖାଇଲେ ।

ଅମିତ ଚିତ୍ରଟିକୁ କିଛି ସମୟ ଦେଖିବା ପରେ ପଚାରିଲା, "ଆଚ୍ଛା ଜେଜେ, ବାଷ୍ପର ତାପ ବଳରେ ଟର୍ବାଇନ୍ କେମିତି ଘୂରେ ଏବଂ ଜେନେରେଟରରୁ କେମିତି ବିଜୁଳି ବାହାରେ ମୁଁ କାରଖାନାକୁ ଗଲେ ଦେଖିପାରିବି ?"

ଜେଜେ କହିଲେ, "ନା, ସେ ସବୁ କାମ ନିବୁଜ କକ୍ଷ ଭିତରେ ଚାଲିଥାଏ । ଦେଖିବା ସମ୍ଭବ ନୁହେଁ । ତୁ ଏ ପ୍ରଶ୍ନ ପଚାରିବୁ ବୋଲି ମୁଁ ଜାଣିଥିଲି । ସେଥିପାଇଁ ଗୋଟେ ଯନ୍ତ୍ର ଆଣିଛି । ବାଷ୍ପଶକ୍ତି ବଳରେ ଟର୍ବାଇନ୍ କେମିତି ଘୂରେ ଏବଂ ବିଜୁଳି କେମିତି ବାହାରେ ଆମେ ଏଥିରୁ ବୁଝିପାରିବା ।" ଏହା କହି ସେ ସେଠାରେ ଥିବା ଫ୍ୟାନ୍ ପରି ଯନ୍ତ୍ରଟାକୁ ପାଖକୁ ଆଣିଲେ । କହିଲେ, "ଦେଖ୍ ଏଥିରେ ଯେଉଁ ବ୍ଲେଡ୍ ଲାଗିଛି, ମନେକର ଏଇଟା ଗୋଟେ 'ଟର୍ବାଇନ୍' ଚକ୍ର । ୟାକୁ ବାଷ୍ପ-ଶକ୍ତି ଘୂରାଇଲେ ଏଥିରେ ସଂଯୋଗ ହୋଇଥିବା 'ଡାଇନାମୋ'ରୁ ବିଦ୍ୟୁତଶକ୍ତି ବାହାରିବ ଏବଂ ଉପରେ ଲାଗିଥିବା ଟର୍ଚ୍ଚ ବଲବ୍‌ଟା ଜଳିବ । ଆମ ବଏଲରରେ ଏବେ ବାଷ୍ପଶକ୍ତି ପ୍ରସ୍ତୁତ ହୋଇଗଲାଣି ।" ଏହା କହି ସେ ଗ୍ୟାସ୍ ଚୁଲାରେ ବସିଥିବା କୁକରକୁ ଦେଖାଇ ତାକୁ ଆସ୍ତେ କରି ଆଣିବାକୁ କହିଲେ । ଅମିତ୍ ତାକୁ ଆଣି ପାଖରେ ରଖିଲା ।

"ଦେଖ୍, କୁକର ଭିତରେ ପାଣି ଫୁଟି ବାଷ୍ପରେ ପରିଣତ ହୋଇ ରହିଛି । ଆମେ ଉପରର ଏ ଠିପିଟାକୁ ଉଠାଇ ନେଲେ ବାଷ୍ପ ବାହାରିବ । ଆମେ ଏବେ ୟାକୁ ଫ୍ୟାନ୍‌ର ବ୍ଲେଡ୍ ପାଖରେ ଦେଖାଇ ଖୋଲିନେବା ।" ଏହା କହି ସେ 'ଠୋ' କିନା ଠିପିଟାକୁ ଖୋଲିଦେଲେ । ହଠାତ୍ ଫ୍ୟାନ୍‌ଟା ଘୂରିବାକୁ ଲାଗିଲା ଏବଂ ବଲ୍‌ବଟା ଧପ୍‌କିନା ଜଳି ଉଠିଲା । ଜେଜେ କହିଲେ, ବଏଲରରୁ ବାଷ୍ପ ଯାଇ ଟର୍ବାଇନ୍ ବ୍ଲେଡ୍‌କୁ ବାଜିଲେ ଟର୍ବାଇନ୍ ଠିକ୍ ଏମିତି ଘୂରେ ଏବଂ ବିଦ୍ୟୁତଶକ୍ତି ଉତ୍ପନ୍ନ ହୁଏ । ଏହା ଦେଖି ଅମିତ୍ ଆଶ୍ଚର୍ଯ୍ୟରେ ଆଖି ତରାଟି କହିଲା, "ଆରେ....ଏ'ତ ଗୋଟେ ମିନି ବିଦ୍ୟୁତ କେନ୍ଦ୍ର ।"



# ଅଷ୍ଟେ ଗିଳା ବୋତଲ

ରାସ୍ତାରେ କିଏ ଜଣେ ବଡ଼ ପାଟିରେ ଡାକି ଡାକି ଯାଉଥାଏ, ଖାଲି ଶିଶି, ଖାଲି ବୋତଲ ବିକିବେ...... ଖାଲି ବୋତଲ ? ହର୍ଲିକ୍ସ ବୋତଲ ଦୁଇଟଙ୍କା, ସ୍କ୍ୱାସ୍ ବୋତଲ ଦେଢ଼ଟଙ୍କା, ଔଷଧ ଶିଶି ଟଙ୍କାଏ.... । ଖାଲି ଶିଶି... ଖାଲି ବୋତଲ ବିକିବେ ଆଜ୍ଞା.... ଖାଲି ବୋତଲ?

ଲୋକଟାର ପାଟି ଶୁଣି ବିନିବୋଉ ରୋଷେଇ ଘର ଭିତରୁ ବାହାରି ଆସିଲେ । ବିନି ଦାଣ୍ଡପିଣ୍ଡାରେ ବସି ଖେଳୁଥିଲା । ସେ ବିନିକୁ କହିଲେ, ‘‘ଲୋକଟାକୁ ଡାକିଲୁ ବିନି । ଘରେ ଗୁଡ଼ାଏ ବୋତଲ ଆଉ ଶିଶି ଅଛି, ବିକିଦେବା ।’’

ବିନି ପଚାରିଲା, ‘‘ବୋଉ, ବୋତଲ କ’ଣ ? ପୁଣି ଶିଶି କ’ଣ ?’’

‘‘ସେ କଥା ମୁଁ ତୋତେ ପରେ ବୁଝେଇବି । ପ୍ରଥମେ ସେ ଲୋକଟାକୁ ଡାକିଲୁ, ନହେଲେ ଚାଲିଯିବ ।’’ ବୋଉ କହିଲେ ।

ବିନି ଯାଇ ଲୋକଟାକୁ ଡାକି ଆଣିଲା । ଗୋଟେ ଡାଲାରେ ଗୁଡ଼ାଏ ଛୋଟ ବଡ଼ ବୋତଲ ଆଣି ବିନିବୋଉ ସେ ଲୋକଟା ଆଗରେ ଥୁଇଦେଇ କହିଲେ, ଏତିକି ଅଛି ନେଇଯା’ ।

ଲୋକଟା ବୋତଲଗୁଡ଼ିକୁ ଗୋଟି ଗୋଟି କରି ପରୀକ୍ଷା କଲା । ଛୋଟବଡ଼ ଆକାର ଅନୁସାରେ ଦୁଇଭାଗ କରି ରଖିଲା । କହିଲା, ‘‘ଆଜ୍ଞା, ଏ ବୋତଲଗୁଡ଼ାକ ହେଲା ସତର ଟଙ୍କା ଏବଂ ଶିଶିତକ ଆଠ ଟଙ୍କା । ଆପଣଙ୍କର ମୋଟ ହେଲା ପଚିଶି ଟଙ୍କା ।’’

ବିନି କହିଲା, ‘‘ବୋଉ ମୁଁ ଜାଣିଗଲି, ଛୋଟଗୁଡ଼ିକୁ ଶିଶି କହନ୍ତି ଆଉ ବଡ଼ଗୁଡ଼ିକୁ କହନ୍ତି ବୋତଲ । ଠିକ୍ ନା ?’’

ବୋଉ କହିଲେ, ‘‘ଠିକ୍ କହିଛୁ । ସବୁ ବିଷୟ କଣ ପାଠ ପଢ଼ିଲେ ହିଁ ଜାଣିହୁଏ? ଆମ ନିତିଦିନିଆ କାରବାର ଆଉ ପରିପାର୍ଶ୍ୱିକ ପରିବେଶରୁ ଆମକୁ ବହୁତ କିଛି ଶିଖିବାକୁ ମିଳେ ।’’

ଠିକ୍ ସେତିକିବେଳେ ବିନୁ ଆସି ସେଠାରେ ପହଞ୍ଚିଲା । ଗୋଟେ ଚଉଡ଼ା ମୁହଁବାଲା ବୋତଲ ତଳୁ ଉଠାଇ ନେଇ କହିଲା, "ଆରେ ଏଇଟା'ତ ମୋ ଅଣ୍ଡାଗିଳା ବୋତଲ । ୟା'କୁ କିଏ ଆଣିଲା ?"

ବୋଉ କହିଲେ, "ଏଇଟା ଅନେକ ଦିନ ରୋଷେଇ ଘର ଥାକରେ ପଡ଼ିଥିଲା । ତୋ କାମରେ ଆଉ ଲାଗବନି ଭାବି ମୁଁ ବିକି ଦେଉଥିଲି, ନବୁ ଯଦି ନେଇଯା ।"

ବିନୁ ବୋତଲଟିକୁ ନେଇ ଘର ଭିତରକୁ ଚାଲିଗଲା । ବିନି ତା' ପଛେ ପଛେ ଯାଇ ପଢ଼ାଘରେ ହାଜର । ପଚାରିଲା, "ଭାଇ..... ଏଇଟା ତମେ କି ବୋତଲ କହିଲ?"

"ଏଇଟା ପରା ଅଣ୍ଡାଗିଳା ବୋତଲ" ବିନୁ କହିଲା । ବିନି ଆଶ୍ଚର୍ଯ୍ୟରେ ପୁଣି ପଚାରିଲା, "ତା'ମାନେ ଏ ବୋତଲଟା କଣ ଅଣ୍ଡା ଗିଳିଦିଏ ?"

"-କାହିଁକି, ତୋତେ କ'ଣ ବିଶ୍ୱାସ ଲାଗୁନି ?"

ବିନି କହିଲା, "କେମିତି ଲାଗିବ ? ସାପ ଅଣ୍ଡା ଗିଳିବା ମୁଁ ଟି.ଭି.ରେ ଦେଖିଛି, ହେଲେ ବୋତଲ ଅଣ୍ଡା ଗିଳିବା କଥା ମୁଁ କେବେ ଶୁଣିନି ମଧ୍ୟ ।"

"ଠିକ୍ ଅଛି, ଦେଖିବୁ ଯଦି ବୋଉକୁ ମାଗି ଗୋଟେ ସିଝା ଅଣ୍ଡା ନେଇକି ଆ ।" ବିନୁ କହିଲା ।

ବିନି ଯାଇ ରୋଷେଇ ଘରେ ହାଜର । ସେ ଯେତେବେଳେ ବୋଉକୁ ଅଣ୍ଡା ମାଗିଲା, ସେ କହିଲେ, "ଦେଖ୍ ବିନି, ରାତିରେ ତମେ ଦୁହେଁ ଅଣ୍ଡା ଭଜା ଖାଇବ ବୋଲି ମୁଁ ଦୁଇଟା ସିଝା ଅଣ୍ଡା ରଖିଛି । ସେଥିରୁ ତୁ ଯଦି ଗୋଟେ ନେଇଯିବୁ, ଆଉ ତୋ ଭାଗକୁ ମିଳିବନି ।"

ବିନି କହିଲା, "ନ ମିଳୁ । ମୁଁ ଖାଇବିନି ପଛେ, ସେ ବୋତଲଟା କେମିତି ଅଣ୍ଡା ଖାଇବ ମୁଁ ଦେଖିବି ।"

ବିନିର ଆଗ୍ରହ ଦେଖି ଫ୍ରିଜରୁ ସିଝା ଅଣ୍ଡାଟେ ବାହାର କରି ତା' ବୋଉ ତାକୁ ଦେଲେ । ସେ ଅଣ୍ଡାଟାକୁ ନେଇ ବିନୁଭାଇକୁ ଦେଲା । ବିନୁ ଅଣ୍ଡାଟିର ଖୋଳପା ଛଡାଇ ସେ ବୋତଲ ମୁହଁରେ ରଖିଲା । କହିଲା, "ଦେଖିଲୁ ବିନି, ଅଣ୍ଡାଟା ବୋତଲ ଭିତରକୁ ପଶି ପାରିବ କି ?"

ବିନି ଭଲ ରୂପେ ଦେଖିବା ପରେ କହିଲା, "ନା ବୋତଲ ମୁହଁଠାରୁ ଅଣ୍ଡାଟା ଟିକିଏ ବଡ଼ ଅଛି । ଗଳି ପାରିବନି ।"

"ଆଚ୍ଛା, ଆମେ ଯଦି ତାକୁ ଜୋର କରି ଠେଲି ପୂରାଇବା ?"

"ଅଣ୍ଡାଟା ଫାଟି ନଷ୍ଟ ହେଇଯିବ ।" ବିନି କହିଲା ।

"କିନ୍ତୁ ମୁଁ ଏମିତି ଗୋଟେ ଯାଦୁ କରିବି ଯେ, ଅଣ୍ଡାଟା ଫୁସ୍ କିନା ବୋତଲ ଭିତରକୁ ପଶିଯିବ ।"

"ଆଁ...... ସତେ ? କଲ ଦେଖି ।" ବିନି ଉତ୍ସୁକତାର ସହିତ କହିଲା ।



ବିନୁ ବାଜେ ପେପର ଖଣ୍ଡେ ଆଣିଲା । ତାକୁ ନିଆଁ ଲଗାଇ ବୋତଲ ଭିତରେ ପକାଇ ଦେଲା । ପେପର ଖଣ୍ଡକ ଜୋରରେ ଜଳିବାକୁ ଲାଗିଲା । ଏତିକିବେଳେ ସେ ଅଣ୍ଡାଟିକୁ ବୋତଲ ମୁହଁରେ ରଖି ସାମାନ୍ୟ ଚାପି ଧରିଲା । ଅଳ୍ପ ସମୟ ପରେ ନିଆଁ ଲିଭିଗଲା । ତା' ସଂଗେ ସଂଗେ ଆଶ୍ଚର୍ଯ୍ୟର କଥା, ଅଣ୍ଡାଟା ଫୁସ୍ କିନା ଗଳି ପଡ଼ିଲା ବୋତଲ ଭିତରକୁ ।

ବିନି ବିସ୍ମୟରେ ଆଖି ତରାଟି ପଚାରିଲା, "ଭାଇ..... ଏ କେମିତି ସମ୍ଭବ ହେଲା?"

ବିନୁ ବୁଝାଇଲା, "ଯା'ର ବୈଜ୍ଞାନିକ କାରଣ ଜାଣିବାକୁ ଚାହୁଁଚୁ ତ ? ଶୁଣ୍, ଯେତେବେଳେ କାଗଜଟା ବୋତଲ ଭିତରେ ଜଳି ଉଠିଲା, ତା' ଭିତରେ ଥିବା ବାୟୁ ଗରମ ହୋଇଗଲା । ମୁଁ ଆଗରୁ କହିଛି, ବାୟୁ ଗରମ ହେଲେ ପ୍ରସାରିତ ହୁଏ ଏବଂ ଅଧିକ ସ୍ଥାନ ଦରକାର କରେ । ବୋତଲର ବାୟୁ ମଧ୍ୟ ଗରମ ହୋଇ ଯେତେବେଳେ ପ୍ରସାରିତ ହେଲା ବୋତଲ ବାହାରକୁ ଚାଲି ଆସିଲା । ଠିକ୍ ସେତିକିବେଳେ ମୁଁ ଅଣ୍ଡାଟିକୁ ବୋତଲ ମୁହଁରେ ଚାପି ଧରିଲି । ବୋତଲ ମୁହଁ ଏବଂ ଅଣ୍ଡା ଭିତରେ ପବନ ଯିବା ପାଇଁ ମଧ୍ୟ ଫାଙ୍କ ନଥିଲା । ତେଣୁ ଅମ୍ଳଜାନ ନପାଇ ବୋତଲ ଭିତର ନିଆଁ ଲିଭିଗଲା । ନିଆଁ ଲିଭିବା ପରେ ବୋତଲର ବାୟୁ ଥଣ୍ଡା ହେବାକୁ ଲାଗିଲା । ଯେହେତୁ ତା' ଭିତରେ ବାୟୁ ଥଣ୍ଡା ହୋଇ ସଂକୁଚିତ ହେଲା, ଅବଶିଷ୍ଟ ସ୍ଥାନ ଭରିବା ପାଇଁ ବାହାର ବାୟୁର ଚାପ ପଡ଼ିଲା । ବାୟୁର ଚାପ ଯେତେବେଳେ ଅଣ୍ଡା ଉପରେ ପଡ଼ିଲା, ଅଣ୍ଡାଟି ଥିରି କରି ଗଳି ପଡ଼ିଲା ବୋତଲ ଭିତରକୁ ।

# ଗରମ ଜଳ – ଉପର ତଳ

ଦିନେ ବିନି ସ୍କୁଲରୁ ଫେରି ଦେଖିଲା, ଘରେ କେହି ନାହାନ୍ତି । ବାପା, ବୋଉ କିମ୍ବା ତା' ବିନୁଭାଇ କାହାର ବି ଦେଖା ମିଳୁନି । ତାକୁ ଭୋକ ଲାଗୁଥିଲା । ରଘୁ ମଉସା.... ରଘୁ ମଉସା.... ଡାକି ସେ ରୋଷେଇ ଘରେ ପଶିଗଲା । ଦେଖେତ, ରଘୁ ମଉସା ରୋଷେଇ ଘରେ ଖଣ୍ଡେ ଚେୟାର ପକେଇ ବସି ଢୁଳାଉଛନ୍ତି । ତେଣେ ଗ୍ୟାସ୍ ଚୁଲାର ଧିମା ଆଞ୍ଚ ଉପରେ କିଛି ଗୋଟେ ବସିଛି ।

ବିନି କୌତୂହଳୀ ହୋଇ ଆଞ୍ଚରେ ବସିଥିବା ଡେକ୍‌ଚିର ଘୋଡଣୀଟା ଖୋଲିଲା । ଦେଖିଲା ପାଣି ଗରମ ହେଉଛି । ଫୁଟନ୍ତା ପାଣି ଭିତରେ ସେ ଗୋଟେ ବିଚିତ୍ର ଦୃଶ୍ୟ ଦେଖିବାକୁ ପାଇଲା ।

କେମିତି କେଜାଣି ଗୋଟେ ପତଳା ରସୁଣ ଚୋପା ପଡ଼ି ଯାଇଥିଲା ପାଣିରେ । ଚୋପାଟା ତା' ଭିତରେ ତଳ ଉପର ହୋଇ ଚକ୍ରୀ ଦୋଳି ଖେଳୁଥାଏ । କେତେବେଳେ ଉପରକୁ ଉଠି ଆସୁଥାଏ ତ କେତେବେଳେ ପୁଣି ତଳକୁ ଚାଲି ଯାଉଥାଏ । ପୁଣି ଉପରକୁ ଉଠି ଆସୁଥାଏ । ବିନି ଏମିତିକା କଉତୁକିଆ ଦୃଶ୍ୟ କେବେ ଦେଖି ନଥିଲା । ତାକୁ ବଡ଼ ମଜା ଲାଗିଲା । ଆଶ୍ଚର୍ଯ୍ୟ ବି ଲାଗିଲା । ମନକୁମନ ଚୋପାଟା ପାଣି ଭିତରେ ତଳ ଉପର କିପରି ହେଉଛି ସେ ବୁଝି ପାରିଲାନି । ଭାବିଲା, ନିଶ୍ଚୟ ୟା' ପଛରେ କିଛି ବୈଜ୍ଞାନିକ କାରଣ ଅଛି ।

ଠିକ୍ ଏତିକିବେଳେ ରଘୁ ମଉସାଙ୍କ ନିଦ ଭାଙ୍ଗିଗଲା । ରୋଷେଇ ଘରେ ବିନିକୁ ଦେଖି ସେ ଆଶ୍ଚର୍ଯ୍ୟ ! କହିଲେ, "ତମେ ବିନିରାଣୀ, କେତେବେଳୁ ଆସିଲଣି ମୋତେ ଟିକିଏ ଉଠେଇ ଦେଇ ନ'ଥାନ୍ତ ? ରୋଷେଇ ତ ସରିଥିଲା, ବସି ବସି ଟିକେ ଢୁଳାଉଥିଲି ।"

ବିନି ପଚାରିଲା, "ଆଚ୍ଛା ମଉସା, ପାଣିରେ ରସୁଣ ଚୋପାଟାଏ ପଡ଼ିଛି । କହି ପାରିବ, ସେଇଟା ମନକୁ ତଳ ଉପର କେମିତି ହେଉଛି ?" ମଉସା ତଙ୍କି ବୁଡାଇ ପ୍ରଥମେ ରସୁଣ ଚୋପାଟାକୁ ପାଣିରୁ ବାହାର କରିଦେଲେ । କହିଲେ, "ପାଣି ଗରମ

ହେଲେ ତଳ ଉପର ହୁଏ । ଚୋପାଟା ମଧ୍ୟ ତା ସହିତ ତଳ ଉପର ହେଉଥିଲା ।''

ବିନି ଆଉ ଟିକେ ଆଶ୍ଚର୍ଯ୍ୟରେ ପଚାରିଲା, ''ପାଣି ଗରମ ହେଲେ ତଳ ଉପର ହୁଏ?'' ମଉସା ବୁଝାଇଲେ, ''ହଁ, ସସ୍‌ପାନରେ ଚାହା କଲାବେଳେ ତମେ ଦେଖିନା, ଚାହାପତି କେମିତି ତଳ-ଉପର ହୋଇ ଖେଳୁଥାଏ ? ଭାତ ଫୁଟିବା ବେଳେ ମଧ୍ୟ ତଳ ଉପର ହେବା ଦେଖିଥିବ ।''

ବିନି ପୁଣି ପଚାରିଲା, ''କିନ୍ତୁ ପାଣି ଗରମ ହେଲେ ତଳ ଉପର କାହିଁକି ହୁଏ?'' ମଉସା ହସି ହସି କହିଲେ, ''ତମେ ବିନିରାଣୀ, ସବୁ କଥାରେ ଯଦି ତମ ବିଜ୍ଞାନ ପାଠ ଆଣି ପୂରାଇବ, ମୋ ପରି ମୂରୁଖ ତମକୁ କେମିତି ବୁଝେଇବ କହିଲ ? ହେଇଟି, ତମ ବାପା, ବୋଉ, ବିନୁଭାଇ ଆସିଲେଣି । ସେମାନଙ୍କୁ ପଚାର ଯେ ବୁଝେଇ ଦେବେ ।''



ରଘୁଣ ଚୋପାର ଦୋଳିଖେଳ ଦେଖିବା ପରଠୁ ବିନି ତା' ଭୋକ କଥା ଭୁଲିଯାଇଥାଏ । ବାପା ଘରେ ପାଦ ଦେଉ ଦେଉ ପଚାରିଲା, ''ବାପା, ପାଣି ଗରମ ହେଲେ ତଳ ଉପର କାହିଁକି ହୁଏ ?''

ବାପା ଅଳ୍ପ ହସିଲେ । ବିନୁ ଆଡକୁ ଚାହିଁ କହିଲେ, ''ବିନୁ ମୁଁ ପାରିବିନି । ୟା'କୁ ତୁ ଟିକେ ବୁଝେଇ ଦେଲୁ । ନ' ବୁଝିଲା ପର୍ଯ୍ୟନ୍ତ ସେ ନିଜେ ଖାଇବନି କି ଆମ କାହାକୁ ଖୁଆଇ ଦେବନି ।''

ବିନୁ ତା ଗେହ୍ଲା ଭଉଣୀ ବିନିକୁ ପାଖରେ ବସେଇ ବୁଝାଇଲା, ''ଦେଖ୍ ବିନି, ପାଣି ଗରମ ହେଲେ ହାଲୁକା ହୁଏ ଏବଂ ଉପରକୁ ଉଠେ । ଆମେ ଯେକୌଣସି ପାତ୍ରରେ ପାଣି ରଖି ଚୁଲ୍ଲାରେ ଗରମ କଲେ ପ୍ରଥମେ ତଳ ଭାଗର ପାଣି ଗରମ ହୁଏ । ଉପର

ଭାଗର ପାଣି ଅପେକ୍ଷାକୃତ ଥଣ୍ଡା ଥାଏ । ଗରମ ପାଣି ହାଲୁକା ଏବଂ ଥଣ୍ଡା ପାଣି ଓଜନିଆ । ତେଣୁ ଥଣ୍ଡା ପାଣିକୁ ଠେଲି ଗରମ ପାଣି ଉପରକୁ ଉଠେ ଏବଂ ଓଜନିଆ ହେତୁ ଥଣ୍ଡା ପାଣି ତଳକୁ ଯାଏ । ତଳ ଅଂଶରେ  ପହଞ୍ଚିବା ପରେ ଥଣ୍ଡା ପାଣି ଗରମ ହୋଇଯାଏ । ଉପରକୁ ଆସିଥିବା ଗରମ ପାଣି ସେ ସମୟ ଭିତରେ ଅପେକ୍ଷାକୃତ ଥଣ୍ଡା ହୋଇଯାଇଥାଏ । ତେଣୁ ତଳର ପାଣି ପୁଣି ଉପରକୁ ଉଠେ ଏବଂ ଉପରପାଣି ତଳକୁ ଯାଏ । ଯେତେବେଳ ପର୍ଯ୍ୟନ୍ତ ପାଣିକୁ ଗରମ କରାଯାଏ, ତାର ଏ ଚକ୍ରଦୋଳି ଖେଳ ଚାଲିଥାଏ ।

ବିନି ପଚାରିଲା, ଭାଇ, ବାୟୁ ଗରମ ହେଲେ ହାଲୁକା ହୋଇ ଉପରକୁ ଉଠେ ବୋଲି ତମେ ସେଦିନ ଗୋଟେ ପରୀକ୍ଷା କରି ବୁଝେଇଥିଲ । ସେମିତି ପାଣି ଗରମ ହେଲେ ଉପରକୁ ଉଠେ ବୋଲି ଜାଣିବା କେମିତି ?

ବିନୁ କହିଲା, ‘‘ଠିକ୍ ଅଛି, ରଘୁ ମଉସାଙ୍କୁ ମାଗି ଏକା ସାଇଜର ଦୁଇଟା ହର୍ଲିକ୍ସ ଜାର ନେଇ ଆସ । ମୁଁ ପରୀକ୍ଷା କରି ଦେଖାଇ ଦେବି ।’’

ବିନି ସଂଗେ ସଂଗେ ଦୁଇଟା ଜାର ନେଇ ଆସିଲା । ବିନୁ ଖଣ୍ଡେ ମୋଟା କାର୍ଡ ଏବଂ ନାଲି ଅଳତା ରଙ୍ଗ ଟିକିଏ ଆଣିଲା । ଡେକ୍‌ଚିରେ ବସିଥିବା ଗରମ ପାଣିକୁ ଗୋଟିଏ ଜାର୍‌ରେ ଢାଳି ସେଥିରେ ଅଳତା ରଙ୍ଗ ମିଶାଇଲା । ଜାରର ଗରମ ପାଣି ଲାଲ ହୋଇଗଲା । ତା’ପରେ ସେ ଅନ୍ୟ ଜାରରେ ଥଣ୍ଡା ପାଣି ପୂରାଇଲା । ତା’ ମୁହଁରେ କାର୍ଡ ଖଣ୍ଡକୁ ଚାପି ଧରି ଜାରଟିକୁ ତଳମୁହାଁ କରି ଧରିଲା । ତା’ପରେ ସେ ଜାରଟିକୁ ଗରମ ପାଣିଥିବା ଜାର ଉପରେ ଆସ୍ତେ କରି ରଖିଲା । ସତର୍କତାର ସହିତ ଦୁଇଟିଯାକ ଜାରର ମୁହଁ ମିଶାଇ ଧରି କହିଲା, ‘‘ଦେଖ୍ ଆମର ଏବେ ତଳ ଜାରରେ ଗରମ ପାଣି ଏବଂ ଉପର ଜାରରେ ଥଣ୍ଡା ପାଣି ଅଛି । ଏବେ ଦେଖ କଣ ହେଉଛି...’’ ଏହା କହି ଦୁଇ ଜାର ମଝିରେ ଥିବା କାର୍ଡ ଖଣ୍ଡିକୁ ସେ ଆସ୍ତେ କରି ଟାଣି ଆଣିଲା । ଏବେ ଦୁଇଟିଯାକ ବୋତଲର ମୁହଁ ଲାଗି ରହିଲା । ବିନି ଉତ୍କଣ୍ଠାର ସହିତ ଚାହିଁ ରହିଥାଏ କ’ଣ ହେଉଛି ଜାଣିବା ପାଇଁ ।

ଦେଖୁ ଦେଖୁ ତଳ ବୋତଲର ରଙ୍ଗିନ୍ ପାଣି ଉପରକୁ ଉଠିବାକୁ ଲାଗିଲା ଏବଂ ଉପର ଜାର୍‌ର ପାଣି ସାଦା ଦେଖାଗଲା ।

ଏ ପରୀକ୍ଷାଟି ପରେ ବିନି ଜାଣିଗଲା ଯେ ବାୟୁ ପରି ଜଳ ମଧ୍ୟ ଗରମ ହେଲେ ହାଲୁକା ହୁଏ ଏବଂ ଉପରକୁ ଉଠେ । ଡାଇନିଂ ଟେବୁଲ ଉପରେ ବଢ଼ା ସରିଥିଲା । ସମସ୍ତେ ଖାଇବାକୁ ଗଲେ । 

# ମେଜିକ୍ ବକ୍ସ

ସେଦିନ ଥିଲା ସପ୍ତମ ଶ୍ରେଣୀର ବିଜ୍ଞାନ ପିରିୟଡ଼ । ବିଜ୍ଞାନ ସାର୍ ଆସି ଶ୍ରେଣୀ ଗୃହରେ ପହଞ୍ଚିଗଲେ । ତାଙ୍କ ପଛେ ପଛେ ପିଅନ୍ ଗୋଟେ ଛୋଟ କାଠ ଡାବଲ ଧରି ଆସିଲା । ଡାବଲଟାକୁ ସାର୍‌ଙ୍କ ଟେବୁଲ ଉପରେ ରଖି ଚାଲିଗଲା । ତା' ଉପରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥିଲା 'ମେଜିକ୍ ବକ୍ସ' । ସବୁ ପିଲାଙ୍କ ଦୃଷ୍ଟି ଡାବଲ ଉପରେ । ସେମାନେ କିଛି ବୁଝି ନପାରି ନିଜ ନିଜ ଭିତରେ ଫୁସ୍‌ଫାସ୍ ହେବାକୁ ଲାଗିଲେ । ଜଣେ ପିଲା ଉଠି ପଚାରିଲା, ସାର୍, ଆମକୁ ଆଜି ବିଜ୍ଞାନ ବଦଳରେ ମେଜିକ୍ ଶିଖାଇବେ ନା' କ'ଣ ?

ସାର୍ କହିଲେ, "ହଁ ପିଲେ, ଆଜି ବିଜ୍ଞାନ ପଢ଼ା ବନ୍ଦ । ଆମେ ମେଜିକ୍ ଶିଖିବା । ମୁମ୍ବାଇରେ ରହୁଥିବା ମୋର ଜଣେ ଯାଦୁଗର ସାଙ୍ଗ ମୋ ପାଖକୁ ଏ ବକ୍ସଟା ପଠାଇଛନ୍ତି । ବଡ଼ ମଜାଦାର ଖେଳ । ତୁମେମାନେ ଯଦି ଚାହିଁବ, ମୁଁ ଶିଖାଇ ଦେବି ।"

ପିଲାମାନେ ସମସ୍ୱରରେ କହି ଉଠିଲେ, "ଆମେ ଶିଖିବୁ ସାର୍.... ଆମେ ଶିଖିବୁ ।"

"ଠିକ୍ ଅଛି, ପ୍ରଥମେ ଦେଖ, ତା'ପରେ ଶିଖିବ ।" ଏ କହି ସାର୍ ଗୋଟେ ସୁନ୍ଦର ଖେଳନା ଡାବଲ ଭିତରୁ ବାହାର କରି ଟେବୁଲ ଉପରେ ରଖିଲେ । ଗୋଟିଏ ଛୋଟ ଟିଣ ବକ୍ସ ଉପରେ ଦୁଇଟି ପ୍ଲାଷ୍ଟିକ୍ ହାତୀ ପରସ୍ପର ଆଡ଼କୁ ପଛ କରି, ଶୁଣ୍ଢ ଉପରକୁ ଉଠାଇ ଠିଆ ହୋଇଥିଲେ । ପିଲାମାନେ କୌତୂହଳୀ ହୋଇ ଏ ବିଚିତ୍ର ଖେଳନାଟିକୁ ଅନାଇ ରହିଲେ । ସାର୍ ତା'ପରେ ଡାବଲରୁ ବାହାର କଲେ ଗୋଟେ ଧୂପକାଠି ବଣ୍ଡିଲ୍, ଦିଆସିଲି ଏବଂ ଗୋଟେ ମେଜିକ୍ କାଠି । ବଣ୍ଡିଲଟାଯାକ ଧୂପକାଠି ସେ ଏକାଥରେକେ ଜଳାଇଲେ । ଧୂଆଁ ଆଉ ସୁଗନ୍ଧରେ ଶ୍ରେଣୀ ସାରା ମହକି ଉଠିଲା । ତା'ପରେ ସେ ମେଜିକ୍ କାଠିଟିକୁ ହାତୀ ଚାରିପାଖରେ ଘୂରାଇ ଆଣି ମନ୍ତ୍ର ପଢ଼ିବା ପରି କହିଲେ, "ହ୍ରିଂ... ସ୍ପିଂ....ମ୍ଲିଂ...କ୍ଲିଂ...ସ୍ଲୋକ୍......ଗ୍ଲିଂ.....ସ୍ଲୋକ୍....ଗ୍ଲିଂ...!" ଏତିକି

କହି ସେ ଧୂପବତିକ ମୂଠାକ ପ୍ରଥମ ହାତୀର ଶୁଣ୍ଢ ପାଖରେ ଧରିଲେ । ଆଶ୍ଚର୍ଯ୍ୟର କଥା, ଧୂପବତିର ଧୂଆଁ ଧାରଟା କୁଆଡକୁ ଖେଳେଇ ନ ହୋଇ ହାତୀର ଶୁଣ୍ଢ ଭିତରେ ପଶିବାକୁ ଲାଗିଲା । ମନେ ହେଲା, ହାତୀ ଯେମିତି ଧୂଆଁଗୁଡାକ ପିଇ ପକାଉଛି ।

ପିଲାମାନେ ଆଶ୍ଚର୍ଯ୍ୟ ଓ କୌତୂହଳର ସହିତ ଆନଇ ରହିଥାନ୍ତି । ସାର୍ କହିଲେ, ''ପିଲେ, ୟେ ଗୋଟେ ଧୂଆଁଗିଳା ହାତୀ । ଆମେ ଯଦି କେବେ କିଛି ଅଧିକା ଖାଇଦେଉ ବାନ୍ତି କରୁ କି ନାଇଁ ? କିନ୍ତୁ ଏ ଦୁଇହାତୀଙ୍କ ଭିତରେ ଏତେ ନିବିଡ଼ ବନ୍ଧୁତା ଯେ, ପ୍ରଥମ ହାତୀ ଗିଳିଲେ ଦ୍ୱିତୀୟ ହାତୀ ବାନ୍ତି କରିବ, ଦେଖ ।'' ଏତିକି କହୁ କହୁ ଦ୍ୱିତୀୟ ହାତୀ ଶୁଣ୍ଢରୁ ଧୂଆଁ ବାହାରିବାକୁ ଲାଗିଲା ।

ପିଲାମାନେ ଖୁସିରେ ତାଳି ମାରିଲେ । ସାର୍ କହିଲେ, ''ଏ ମେଜିକ୍‌ଟି ଯିଏ ଶିଖିବାକୁ ଚାହୁଁଚ, ମୋ ପାଖକୁ ଆସ । ପ୍ରଥମେ ଶୁଦ୍ଧ ଭାବରେ ମେଜିକ୍ ମନ୍ତ୍ରଟା ଉଚ୍ଚାରଣ କର । ତା'ପରେ ଶିଖିପିବ ।''

ସୁମନ ନାମକ ପିଲାଟିଏ ଉଠି କହିଲା, ''ସାର୍, ବିନା ମନ୍ତ୍ରରେ ମୁଁ ମେଜିକ୍‌ଟା ଦେଖାଇ ପାରିବି ।'' ସାର୍ କୃତ୍ରିମ ଆଶ୍ଚର୍ଯ୍ୟ ପ୍ରକାଶ କରି କହିଲେ, ''କଣ ହେଲା !



ମୁଁ ଏତେ କଷ୍ଟ କରି ମନ୍ତ୍ରଟା ଘୋଷି ମେଜିକ୍ ଶିଖିଚି, ତମେ କେମିତି କହୁଚ ବିନା ମନ୍ତ୍ରରେ ଶିଖାଇ ଦେବ ?''

ସୁମନ ହସି ହସି ଉତ୍ତର ଦେଲା, ''କାରଣ ଏ ମେଜିକ୍ ଫେଜିକ୍ ନୁହେଁ, ବିଜ୍ଞାନର ଖେଳ ।''

ତା' କଥା ଶୁଣି ସାର୍ ମଧ୍ୟ ହସି ପକାଇଲେ । ଯେଉଁ ପିଲାମାନେ ସତ ମେଜିକ୍ ବୋଲି ଭାବୁଥିଲେ, ସେମାନେ ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ । ସାର୍ କହିଲେ, "ହଁ ପିଲେ, ସୁମନ ଯାହା କହିଲା ସତ । ଏ ଗୋଟେ ବିଜ୍ଞାନ ଖେଳ । ହେଲେ ବିଜ୍ଞାନର କେଉଁ ନିୟମ ବଳରେ ପ୍ରଥମ ହାତୀ ଧୂଆଁ ପିଉଛି ଏବଂ ଦ୍ୱିତୀୟ ହାତୀ ବାନ୍ତି କରୁଛି, ଦେଖ ।" ଏହା କହି ସେ ଟିଣ ବାକ୍ସଟାକୁ ବୁଲାଇ ଦେଲେ ।

ବର୍ତ୍ତମାନ ବକ୍ସର ଯେଉଁ ପଟଟା ସାରଙ୍କ ଆଡକୁ ଥିଲା ତାହା ପିଲାମାନଙ୍କ ଆଡକୁ ହୋଇଗଲା । ତା'ପରେ ସେ ବକ୍ସର ଗୋଟିଏ ପାଖରୁ ଛୋଟ ଦୁଆରଟିଏ ଖୋଲିଦେଲେ । ଦେଖାଗଲା, ବକ୍ସ ଭିତରେ ବଡ଼ ମହମବତିଟିଏ ଜଳୁଛି । ସାର୍ କହିଲେ, "ଏବେ ସୁମନ ଆସି ଏ ଖେଳର ରହସ୍ୟ ବିଷୟରେ ତୁମମାନଙ୍କୁ ବୁଝାଇବ ।"

ସୁମନ ଟେବୁଲ ପାଖକୁ ଆସି କହିଲା, "ଭାଇମାନେ ଦେଖ, ହାତୀ ଦୁଇଟା ଏ ଟିଣ ବାକ୍ସ ଉପରେ ଠିଆ ହୋଇଛନ୍ତି । ବକ୍ସଟା ପୂରା ନିବୁଜ । କିନ୍ତୁ ଉପର ପଟେ ଦୁଇଟା ରନ୍ଧ୍ର ଅଛି । ବାହାରୁ ଦୁଇଟି ବଙ୍କା ନଳୀ ରନ୍ଧ୍ର ଭିତରେ ପଶିଛି । ନଳୀର ଆର ମୁଣ୍ଡଗୁଡ଼ିକ ଉଭୟ ହାତୀର ପେଟ ଭିତର ଦେଇ ଶୁଣ୍ଢ ପର୍ଯ୍ୟନ୍ତ ଯାଇଛି । ତା' ମାନେ ଉଭୟ ହାତୀର ଶୁଣ୍ଢରୁ ବକ୍ସ ପର୍ଯ୍ୟନ୍ତ ବାଟ ଅଛି । ବକ୍ସ ଭିତରେ, ଦ୍ୱିତୀୟ ହାତୀର ଶୁଣ୍ଢ ପାଖରୁ ଆସିଥିବା ନଳୀ ତଳେ ଦେଖ, ମହମବତିଟେ ଜଳୁଛି । ଏବେ ଆମେ ଯଦି ବକ୍ସର କବାଟଟି ବନ୍ଦ କରିଦେବା, କ'ଣ ହେବ କହିଲ ? ବକ୍ସ ଭିତରର ବାୟୁ ଗରମ ହେବ । ଆମେ ଜାଣିଛେ, ବାୟୁ ଗରମ ହେଲେ ହାଲୁକା ହୁଏ ଏବଂ ଉପରକୁ ଉଠେ । ଉପରକୁ ଉଠିବାକୁ ଦୁଇଟା ନଳୀ ଅଛି । କିନ୍ତୁ ଦ୍ୱିତୀୟ ନଳୀ ତଳେ ମହମବତି ଜଳୁଥିବା ହେତୁ ତା' ପରିପାର୍ଶ୍ୱର ବାୟୁ ପ୍ରଥମେ ଗରମ ହୋଇ ସେହି ରାସ୍ତାରେ ହିଁ ଉପରକୁ ଉଠିବ । ବକ୍ସ ଭିତରର ବାୟୁ ଶୂନ୍ୟସ୍ଥାନ ପୂରଣ କରିବା ପାଇଁ ପୁଣି ଯେତେବେଳେ ବାୟୁ ଦରକାର ହେବ ପ୍ରଥମ ନଳୀ ଦେଇ ପ୍ରବେଶ କରିବ । ଅର୍ଥାତ୍ ପ୍ରଥମ ହାତୀର ଶୁଣ୍ଢ ଦେଇ ବାୟୁ ପଶିବ ଏବଂ ଦ୍ୱିତୀୟ ହାତୀର ଶୁଣ୍ଢ ଦେଇ ବାହାରିବ ।

ଏହି ପ୍ରକ୍ରିୟା ଚାଲିଥିବା ବେଳେ ସାର୍ ଧୂପ ଧୂଆଁକୁ ପ୍ରଥମ ହାତୀର ଶୁଣ୍ଢ ପାଖରେ ଧରିଲେ । ଧୂଆଁ ବାୟୁ ସହିତ ମିଶି ପ୍ରଥମ ହାତୀର ଶୁଣ୍ଢରେ ପଶିଲା ଏବଂ ବକ୍ସ ଦେଇ ପୁଣି ଗରମ ବାୟୁ ସହିତ ଦ୍ୱିତୀୟ ହାତୀର ଶୁଣ୍ଢରୁ ବାହାରିଲା ।

ଏ ହେଉଛି ବିଜ୍ଞାନର ଖେଳ, ମେଜିକ୍ ନୁହେଁ । ପିଲାମାନେ ଏକା ସାଙ୍ଗରେ ତାଳି ମାରିବାକୁ ଲାଗିଲେ । 

# ବିଚିତ୍ର ଗୁମ୍ଫା

ମନୋଜବାବୁ ଆନ୍ଧ୍ର ପ୍ରଦେଶରେ ଚାକିରି କରନ୍ତି । ତାଙ୍କର ଦୁଇଝିଅ, ଲିଲି ଆଉ ମିଲି । ଥରେ ଛୁଟିଦିନ ଦେଖି ସେ ପିଲାମାନଙ୍କୁ ଧରି ବୁଲି ବାହାରିଲେ । ଆନ୍ଧ୍ର ପ୍ରଦେଶର ଅନେକ ଦର୍ଶନୀୟ ସ୍ଥାନ ସେ ଦେଖିଥିଲେ । ଏଥର ସ୍ଥିର ହେଲା, 'ବୋରା-କେଭସ୍' ଯିବା ପାଇଁ । ସେ ଶୁଣିଥିଲେ, ବୋରା-କେଭସ୍ ବା ବୋରା-ଗୁମ୍ଫା ପ୍ରକୃତରେ ଗୋଟେ ଦେଖିବା ଭଳି ଜାଗା । ବେଶୀ ଦୂର ବି ନୁହଁ, ମାତ୍ର ତିନି ଘଣ୍ଟାର ରାସ୍ତା ।

ସକାଳୁ ସକାଳୁ ଗାଡ଼ିଟିଏ କରି ସେ ବାହାରି ପଡ଼ିଲେ । ସାଙ୍ଗରେ ଲିଲି, ମିଲି ଆଉ ସେମାନଙ୍କ ବୋଉ । ନ'ଟା ବେଳକୁ ଗାଡ଼ି ପହଞ୍ଚିଗଲା ଗୁମ୍ଫା ନିକଟରେ । ଭିତରକୁ ଯିବାକୁ ହେଲେ ଟିକଟ କରିବାକୁ ପଡ଼େ । ସାଙ୍ଗରେ ଜଣେ ଗାଇଡ୍ ଯାଆନ୍ତି ।

ଲିଲି ଓ ମିଲି ହାତ ଧରାଧରି ହୋଇ ଗୁମ୍ଫା ଆଡକୁ ଚାଲିଲେ । ଦେଖିଲେ ସେ ଜାଗାଟା ଅସଂଖ୍ୟ ଛୋଟବଡ଼ ପଥରରେ ପରିପୂର୍ଣ୍ଣ । ସେ ଏକ ପ୍ରକାର ସୁନ୍ଦର ଧଳା ପଥର । ଅଣ୍ଡା ପରି ଚିକ୍କଣ । ଅଳ୍ପ ଦୂରରେ ଝରଣାଟିଏ ବହିଯାଉଥିଲା । ଗୁମ୍ଫା ଭିତରକୁ ପଶିବା ବାଟଟି ଦେଖାଯାଉଥିଲା ଗୋଟେ ବିରାଟ କୂଅ ପରି । ବଡ଼ ସତର୍କତାର ସହିତ ସେମାନେ ଭିତରେ ପଶିଲେ ।



ଭିତରର ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟରେ ମୂକ ପାଲଟିଗଲେ ସମସ୍ତେ । ହଠାତ୍ ବୁଝି ପାରିଲେନି, ସେମାନେ ଯାହା ଦେଖୁଛନ୍ତି ତାହା ପ୍ରାକୃତିକ

ଦୃଶ୍ୟ ନା ହାତଗଢ଼ା କାରିଗରୀ । ଏତେବଡ଼ ଗୁମ୍ଫାଟା ସତେ ଯେମିତି ତରଳ ଉଉରେ ତିଆରି ହୋଇଥିଲା । ତା' ଭିତରେ ଉଉର ସ୍ତୂପ ପରି ଅନେକ ପଥର ଢୁଙ୍କା । ବରଗଛର ଓହଳ ପରି ଛାତରୁ ମଧ୍ୟ ଲମ୍ବି ରହିଥାଏ ଧାଡ଼ି ଧାଡ଼ି ପଥର ଖୁମ୍ବ । ଉପରୁ ଟୋପା ଟୋପା ପାଣି ପଡୁଥାଏ ।

ଲିଲି ଓ ମିଲି ଖଣ୍ଡଗିରି ଗୁମ୍ଫା ଦେଖିଥିଲେ । ଶହ ଶହ ବର୍ଷ ତଳେ ମଣିଷ ପାହାଡ଼ ପଥର କାଟି ଗୁମ୍ଫା ତିଆରି କରିଛି ବୋଲି ସେମାନେ ପଢ଼ିଛନ୍ତି । ହେଲେ ଏ ବିଚିତ୍ର ଉଉ ଗୁମ୍ଫା ତିଆରି କରିଛି କିଏ ? ଲିଲି ପଚାରିଲା ବାପାଙ୍କୁ ।

ମନୋଜବାବୁ କହିଲେ, "ନା'ରେ ମା' ଏ ଗୁମ୍ଫା ମଣିଷ ତିଆରି କରିନି, କରିଛି ପ୍ରକୃତି । ଏହା ପ୍ରକୃତିର କାରୁକାର୍ଯ୍ୟ । ଏ କାମ କରିବା ପାଇଁ ପ୍ରକୃତିକୁ ହଜାର ହଜାର ବର୍ଷ ଲାଗିଥିବ । ଏବେବି ତା' କାମ ଚାଲିଛି ।"

"ଏତେ ସୁନ୍ଦର ଉଉର ଗୁମ୍ଫା ସତରେ ବାପା ପ୍ରକୃତି ତିଆରି କରିଛି ?" ମିଲି ପୁଣି ବିସ୍ମୟରେ ଦୋହରାଇଲା । ବାପା କହିଲେ, "ହଁ, ଏ ଗୋଟେ ପ୍ରକାର ବିଜ୍ଞାନର ଖେଳ । ଢୁଙ୍କା ପରି ଚଟାଣ ଉପରେ ଯେଉଁ ଗୋଜିଆ ସ୍ତୂପଗୁଡ଼ାକ ଦେଖୁଛ, ଆମ ବିଜ୍ଞାନ ଭାଷାରେ ୟାକୁ କହନ୍ତି ଆରୋହୀ ଶଙ୍କୁ ବା Stalagmite । ଆଉ ଯେ ଓହଳା ପଥର ଖୁମ୍ବଗୁଡ଼ାକୁ କହନ୍ତି ଅବରୋହୀ ଶଙ୍କୁ ବା Stalactite."

ଦୁଇ ଝିଅ ଗୁମ୍ଫା ଦେଖିବେ କଣ ବିସ୍ମୟରେ ବାପାଙ୍କ ଆଡ଼କୁ ଚାହିଁ ପଚାରିଲେ, "ଆରୋହୀ-ଅବରୋହୀ ଶଙ୍କୁ କ'ଣ ବାପା ? ଆମକୁ ଟିକିଏ ବୁଝାଇ କୁହନା ।"

ବାପା କହିଲେ, "ଦେଖ ପିଲେ, ଆମେ ଯାହାକୁ ପଥର ଢୁଙ୍କା ବା ଉଉ ବୋଲି ଭାବୁଛେ, ପ୍ରକୃତରେ ତାହା ପଥର କି ଉଉ ନୁହେଁ ଏକ ପ୍ରକାର କଠିନ ରାସାୟନିକ ପଦାର୍ଥ । ଗୁମ୍ଫା ବାହାରେ, ଚାରିପାଖରେ ପାଣି ଅଛି । ସେ ପାଣିରେ ଏହି ରାସାୟନିକ ପଦାର୍ଥ ଦ୍ରବୀଭୂତ ଅବସ୍ଥାରେ ଅଛି । କୈଶିକ ଆକର୍ଷଣ ବଳରେ ସୂକ୍ଷ୍ମ ଜଳ ସ୍ରୋତ ଉପରକୁ ଉଠେ । ପୁଣି ବୁନ୍ଦା ବୁନ୍ଦା ହୋଇ ତଳକୁ ଖସେ । ଏହା ହେବା ପାଇଁ ଯଥେଷ୍ଟ ସମୟ ଲାଗେ । ସେ ସମୟ ଭିତରେ ଅଧିକାଂଶ ଜଳ ବାଷ୍ପୀଭୂତ ହୋଇଯାଏ ଏବଂ ସେଥିରେ ଦ୍ରବୀଭୂତ ଅବସ୍ଥାରେ ଥିବା ରାସାୟନିକ ପଦାର୍ଥ ତଳକୁ ଖସି ଧୀରେ ଧୀରେ କଠିନ ହେବାକୁ ଲାଗେ । ତଳକୁ ଖସିବା ପୂର୍ବରୁ ଯେଉଁ ପଦାର୍ଥ କଠିନ ହୋଇଯାଏ, ତାହା ଛାତରୁ ଓହଳ ପରି ଲମ୍ବି ରହେ ।"

ଲିଲି କହିଲା, ''ବାପା, ତମେ ଯାହା କହିଲ, ମୋଟାମୋଟି ଉପରେ ମୁଁ ବୁଝିଗଲି, ହେଲେ ଏମିତି ହୁଏ ବୋଲି ଆଦୌ ବିଶ୍ୱାସ ଲାଗୁନି ।''

ବାପା କହିଲେ, ''ଠିକ୍ ଅଛି, ଏହା କେମିତି ସମ୍ଭବ ହୁଏ ଘରେ ପହଞ୍ଚିବା ପରେ ଗୋଟେ ପରୀକ୍ଷା ମାଧ୍ୟମରେ ତୁମକୁ ବୁଝାଇ ଦେବି ।''

ମନଇଚ୍ଛା ବୁଲାବୁଲି କରି ସେମାନେ ସନ୍ଧ୍ୟା ସୁଦ୍ଧା ଘରକୁ ଫେରିଲେ । ଘରେ ପାଦ ଦେଉ ଦେଉ ଦୁଇଝିଅ ଲାଗିଗଲେ ବାପାଙ୍କ ପିଛା । ମନୋଜବାବୁ ବୁଝିଲେ, ପିଲାଙ୍କ ମନରୁ ସନ୍ଦେହ ଦୂର ନକଲେ ସେମାନେ ଛାଡ଼ିବେନି । ସେ ଝିଅମାନଙ୍କୁ କହିଲେ, ଛୋଟ ଗୋଟେ ଡେକ୍‌ଚିରେ କିଛି ପାଣି, ଦୁଇଟା ଏକା ସାଇଜର ଗ୍ଲାସ୍ ଏବଂ



ରୋଷେଇ ଘରୁ କିଛି ଲୁଣ ଆଣିବା ପାଇଁ । ଝିଅମାନେ ସଂଗେ ସଂଗେ ସବୁ ଜିନିଷ ଯୋଗାଡ଼ି ଦେଲେ । ତା'ପରେ ସେ ବଡ଼ ଝିଅ ଲିଲିକୁ କହିଲେ, ''ଦେଖ୍ ଲିଲି, ଏ ଲୁଣକୁ ପାଣିରେ ଗୋଳେଇ ଆମକୁ ପରିପୃକ୍ତ ଦ୍ରବଣ ତିଆରି କରିବାକୁ ପଡ଼ିବ । ଲିଲି ସପ୍ତମ ଶ୍ରେଣୀରେ ପଢ଼େ । ସେ ସଂଗେ ସଂଗେ ବୁଝିଗଲା । ଡେକ୍‌ଚିରେ ମୁଠା ମୁଠା ଲୁଣ ପକାଇ ଗୋଳିବାକୁ ଲାଗିଲା । ପ୍ରାୟ ତିନିମୁଠା ଲୁଣ ପଡ଼ିବା ପରେ ପାଣିରେ ଆଉ ଲୁଣ ମିଳେଇଲା ନାହିଁ । ସେ କହିଲା, ''ବାପା, ଦ୍ରବଣ ପ୍ରସ୍ତୁତ ।'' ବାପା ଗୋଟେ ଛୋଟ ପ୍ଲାଷ୍ଟିକ୍-ଟ୍ରେ ଏବଂ ପ୍ରାୟ ଏକ ଫୁଟ ଲମ୍ବର ଖଣ୍ଡେ ଚଉଡ଼ା ଲଣ୍ଠନ ଫିତା ଧରି ଆସିଲେ । ଫିତାର ଦୁଇ ମୁଣ୍ଡରେ ଦୁଇଟି ଲୁହା ବୋଲଟ୍ ବନ୍ଧା ହେଇଥିଲା ।

ସେ ପ୍ରଥମେ ଲୁଣମିଶା ପାଣିକୁ ଦୁଇ ଗ୍ଲାସରେ ସମାନ ଭାବେ ଢାଳିଲେ । ଗ୍ଲାସ୍ ଦୁଇଟିକୁ ପ୍ରାୟ ଚାରିଇଞ୍ଚ ବ୍ୟବଧାନରେ ରଖିଲେ । ଫିତାର ଦୁଇମୁଣ୍ଡକୁ ଦୁଇ ଗ୍ଲାସରେ ପୂରାଇ ରଖିଲେ । ଫିତା ମୁଣ୍ଡରେ ଓଜନିଆ ପଦାର୍ଥ ବନ୍ଧା ହୋଇଥିବାରୁ ଫିତାଟି ଦୁଇ ପାଖକୁ ଟାଣି ହୋଇ ଦୁଇ ଗ୍ଲାସ୍ ଉପରେ ସିଧା ରହିଲା । ତା'ପରେ ସେ ଫିତା ତଳେ, ଦୁଇଗ୍ଲାସ୍ ମଝିରେ ପ୍ଲାଷ୍ଟିକ୍-ଟ୍ରେଟିକୁ ରଖିଲେ । କହିଲେ, ୟାକୁ ପ୍ରାୟ ଦୁଇଘଣ୍ଟା ପାଇଁ ଏପରି ଛାଡ଼ି ଦିଅ ଏବଂ ତୁମେ ପଢ଼ିବାକୁ ଯାଅ । ଦୁଇ ଘଣ୍ଟା ପରେ ଦେଖିବା, କ'ଣ ହେଉଛି ।

ଠିକ୍ ଦୁଇ ଘଣ୍ଟା ପରେ ଲିଲି ମିଲି ପୁଣି ଆସି ପହଞ୍ଚିଗଲେ । ଦେଖିଲେ, ଦୁଇଗ୍ଲାସ୍ ମଝିରେ, ଯେଉଁଠି ଫିତାଟି ଶୁଖିଲା ଥିଲା ତାହା ଓଦା ହୋଇଯାଇଛି ଏବଂ ସେଠାରୁ କେଇବୁନ୍ଦା ପାଣି ଟ୍ରେରେ ପଡ଼ିବା ପରି ମନେ ହେଉଛି । ସେମାନେ ବାପାଙ୍କୁ ଡାକି ଆଣି ଦେଖାଇଲେ । ବାପା କହିଲେ, ''ହଁ, ଫିତାର କୈଶିକ ଆକର୍ଷଣ ଯୋଗୁ ପାଣି ଉପରକୁ ଉଠୁଛି । ଦୁଇ ପାଖରୁ ଏକା ସାଙ୍ଗରେ ଉଠିବା ହେତୁ ଫିତାର ଠିକ୍ ମଝିରେ ଜମା ହୋଇ ପୁଣି ତଳକୁ ଖସୁଛି । ଏବେ ଆମେ ଏ ପରୀକ୍ଷାଟିକୁ ଗୋଟିଏ ରାତି ପାଇଁ ଛାଡ଼ି ଦେବା । କାଲି ଦେଖିବା କ'ଣ ହେଉଛି ।

ପରଦିନ ଦି'ପହର ବେଳକୁ ଲିଲି, ମିଲି ସ୍କୁଲରୁ ଫେରିଲେ । ଉଭୟେ କୌତୂହଳର ସହିତ ଯାଇ ଦେଖନ୍ତି ତ ଫିତାର ଯେଉଁ ଅଂଶରେ ପାଣି ବୁନ୍ଦା ଦେଖାଯାଉଥିଲା ସେଠାରେ ଧଳା ଧଳା ହୋଇ କିଛି ଜମା ହୋଇଛି । ଟ୍ରେରେ ମଧ୍ୟ କିଛି ଧଳା ଦାନା ପଡ଼ିଛି । ବାପା ବୁଝାଇଲେ, ''ଦେଖ ପିଲେ, ଆମେ ପାଣିରେ ଯେଉଁ ଲୁଣ ଗୋଳିଥିଲେ, ଏହି ଧଳା ଦାନାଗୁଡ଼ିକ ସେହି ଲୁଣ । ଦ୍ରବଣ ଯେତେବେଳେ ଫିତା ମଝିରେ ଆସି ଜମିଲା, ସେଥିରୁ ପାଣି ଧୀରେ ଧୀରେ ବାଷ୍ପୀଭୂତ ହେଲା ଏବଂ ଲୁଣ କଠିଣ ହେବାକୁ ଲାଗିଲା । ଆମେ 'ବୋରା ଗୁମ୍ଫା'ରେ ଯେଉଁ ଚୁଙ୍ଗା ଏବଂ ଓହଳ ଦେଖିଥିଲେ, ତାହା ଏହି ପ୍ରକ୍ରିୟାରେ ସୃଷ୍ଟି ହେଇଛି । ମାତ୍ର ଗୋଟିଏ ରାତି ଭିତରେ ଯଦି ଏହା ସମ୍ଭବ ହୋଇ ପାରିଲା, ହଜାର ହଜାର ବର୍ଷ ଧରି ଚାଲିଥିବା ପ୍ରକ୍ରିୟାରୁ ସେପରି ଗୋଟେ ବଚିତ୍ର ଗୁମ୍ଫା ସୃଷ୍ଟି ହେବା ଅସମ୍ଭବ କଥା ନୁହେଁ ।''

ଦୁଇଝିଅ ଏକା ସାଙ୍ଗରେ ମୁଣ୍ଡ ଟୁଙ୍ଗାରି କହିଲେ, ''ହଁ..... ସତକଥା ।''



# ପାଣିଆ କ୍ଷୀର - ପରୀକ୍ଷା କର

ସୁମନ୍ତବାବୁଙ୍କ ପରିବାର ଟିକେ ବଡ଼ । ପିଲାମାନେ ରାତିରେ କ୍ଷୀର ପିଅନ୍ତି । ଦିନରେ ଦୁଇ ଚାରିଥର ଚାହା ବି ହୁଏ । ତେଣୁ ପ୍ରତିଦିନ ଦୁଇ ଲିଟର କରି କ୍ଷୀର ଦରକାର ପଡ଼େ । ପାଖ ଗାଁରୁ ବରଜୁ ଗଉଡ଼ କ୍ଷୀର ଆଣି ଦିଏ । ତା' କ୍ଷୀର କିନ୍ତୁ ପୂରା ପାଣିଆ । ପ୍ରଥମେ କିଛିଦିନ ସେ ଖାଣ୍ଟି କ୍ଷୀର ଦେଲା । ତା'ପରେ ଧୀରେ ଧୀରେ ପାଣି ମିଶେଇବା ଆରମ୍ଭ କଲା । ଏବେ ଯାହା ସେ ଦେଉଛି, ଅଧା କ୍ଷୀର - ଅଧା ପାଣି । ପଚାରିଲେ କହେ, ''ଆଜ୍ଞା, ଆଖି ଛୁଇଁ କହୁଛି, ମୁଁ ଟୋପେ ବି ପାଣି ମିଶେଇନି । ଆପଣ ମିଟର ପକାଇ ଦେଖୁ ନାହାନ୍ତି ?''

ପ୍ରତିଦିନ ସେ ଏକା କଥା କହେ ଏବଂ ପାଣି-ମିଶା କ୍ଷୀର ଦେଇ ଚାଲିଯାଏ ।

ସୁମନ୍ତ ବାବୁଙ୍କର ଦୁଇପୁଅ - କୁନା ଆଉ ମୁନା । କୁନା ବଡ଼, ଅଷ୍ଟମ ଶ୍ରେଣୀରେ ପଢ଼େ । ମୁନା ଷଷ୍ଠରେ । ଦୁହିଁଙ୍କୁ ଦୁହେଁ ଭାରି ବୁଦ୍ଧିଆ । ବିଜ୍ଞାନ ପାଠରେ ଆଗୁଆ ।

ଦିନେ ମୁନା ପଚାରିଲା, ''ଭାଇ, ଗଉଡ଼ ଆମକୁ ପାଣିମିଶା କ୍ଷୀର ଦେଇ, କେଉଁ ମିଟର ପକାଇ ଦେଖିବାକୁ କହୁଛି ?''

କୁନା କହିଲା, ''ସେ ହାଇଡ୍ରୋମିଟର କଥା କହୁଛି । ହାଇଡ୍ରୋମିଟର ଦ୍ୱାରା ପରୀକ୍ଷା କଲେ କ୍ଷୀରରେ କେତେ ପରିମାଣ ପାଣି ମିଶିଚି ଧରା ପଡ଼ିଯାଏ ।''

ମୁନା ପୁଣି ପଚାରିଲା, ''ଆଚ୍ଛା, ସେ'ତ ଆମକୁ ପାଣିମିଶା କ୍ଷୀର ଦେଉଛି । ଏମିତି ପୁଣି ଫୁଟାଣିଆ କଥା କହୁଛି କେମିତି ଯେ ?''

''କାରଣ ସେ ଜାଣେ, ହାଇଡ୍ରୋମିଟର ସମସ୍ତଙ୍କ ଘରେ ନଥାଏ । ୟା'ର ବ୍ୟବହାର ମଧ୍ୟ ସମସ୍ତେ ଜାଣନ୍ତି ନାହିଁ, ସେଥିପାଇଁ ।''

"ଆଚ୍ଛା ଭାଇ, ଆମ ସ୍କୁଲ ଲାବ୍ରୋଟାରୀରେ ତ ହାଇଡ୍ରୋମିଟର ଥିବ । ସାର୍‌ଙ୍କୁ କହି ଗୋଟିଏ ଦିନ ପାଇଁ ମିଟରଟା ଆଣିବା କି ? ଗଉଡ଼ ପୁଅକୁ ବୁଦ୍ଧି ଶିଖେଇ ଥାନ୍ତେ ।" ମୁନା କହିଲା ।

"ହେଲେ ବିଜ୍ଞାନ ସାର୍ ଆମକୁ କ'ଣ ଯନ୍ତ୍ରଟା ଦେବେ ? କିନ୍ତୁ ମୁନା, ଆମେ ଚାହିଁଲେ ଗୋଟେ ସରଳ ହାଇଡ୍ରୋମିଟର ନିଜେ ବି ତିଆରି କରି ପାରିବା ।"

ମୁନା ଆଶ୍ଚର୍ଯ୍ୟରେ ଆଖି ତରାଟି କହିଲା, "ଆମେ, ପୁଣି ହାଇଡ୍ରୋମିଟର ତିଆରି କରି ପାରିବା ?"

"ହଁ...... ଭାରି ସହଜ । ଏଇ ସଂଗେ ସଂଗେ କରି ମୁଁ ତୋତେ ଦେଖାଇ ଦେବି, ଚାଲ । ହେଲେ ଏଥିପାଇଁ ଆମକୁ କେତୋଟି ଜିନିଷ ଯୋଗାଡ଼ କରିବାକୁ ପଡ଼ିବ । ପ୍ରଥମେ ଦରକାର କିଛି ଖାଣ୍ଟି କ୍ଷୀର । ଉପର ସାହିରେ ରଘୁ ମଉସା ଘର ଗାଈ ଦୁହାଁ ଚାଲିଥିବ । ମୁଁ ଯାଉଛି, ଅଧିକ ପଇସା ଦେଇ କିଛି ଖାଣ୍ଟି କ୍ଷୀର ଆଣିବି । ୟା ଭିତରେ ତୁ ଗୋଟେ କାମ କର । ବୋଉକୁ ମାଗି ତିନୋଟି ଚଉଡ଼ା ମୁହଁବାଲା ବାଟି ଆଣ । ବରଢୁ ଗଉଡ଼ ଯେଉଁ ଦୁଇ ଲିଟର କ୍ଷୀର ଦେଇଛି, ସେଥିରୁ ପ୍ରାୟ ଅଧଲିଟର କ୍ଷୀର ବାହାର କରି ଗୋଟିଏ ବାଟିରେ ରଖିବୁ ଏବଂ ସେଥିରେ ଆଉ ଲିଟରଟିଏ ପାଣି ମିଶାଇବୁ । ବଳକା ଦେଢ଼ ଲିଟର କ୍ଷୀରକୁ ଆଉ ଗୋଟିଏ ବାଟିରେ ରଖିବୁ । ଅନ୍ୟ ବାଟିଟି ଖାଲି ରଖିଥିବୁ । ତା'ପରେ ତୋତେ ଆଉ ଦୁଇଟା ଜିନିଷ ଯୋଗାଡ଼ କରିବାକୁ ପଡ଼ିବ । ଗୋଟେ ହାଲକା ପ୍ଲାଷ୍ଟିକ୍ ଠିପି । ନେଲ୍‌ପଲିସ୍ କିମ୍ବା ଲିପ୍‌ଷ୍ଟିକ୍ ଶିଶିର ଠିପି ହେଲେ ଚଳିବ । ଆଉ କିଛି ଲୁହା ଗୋଲି । ବନୁଆର ସାଇକେଲ ରିପାରିଂ ଦୋକାନକୁ ଗଲେ ସେଗୁଡ଼ାକ ମିଳିଯିବ ।"

ମୁନା କହିଲା, "ସବୁ ମୁଁ ଯୋଗାଡ଼ କରିଦେବି । ତୁମେ କ୍ଷୀର ନେଇ ଚଞ୍ଚଳ ଆସ ।" କୁନା ସଂଗେ ସଂଗେ ସାଇକେଲ ବାହାର କରି ଉପରସାହି ରଘୁ ମଉସାଙ୍କ ଘର ଆଡ଼େ ଚାଲିଲା । ସେ ଦେଢ଼ ଲିଟର ଖାଣ୍ଟି କ୍ଷୀର ନେଇ ଆସିବା ବେଳକୁ ମୁନା ସବୁ ସରଞ୍ଜାମ ଯୋଗାଡ଼ କରି ବସିଥାଏ ।

ଖାଲିଥିବା ବାଟିରେ କୁନା କ୍ଷୀରତକ ଢାଳିଲା । କହିଲା, "ବାସ୍, ଆମର ଏବେ ତିନୋଟି ବାଟିରେ ତିନି ପ୍ରକାର କ୍ଷୀର ରହିଲା । ପ୍ରଥମଟିରେ ପୁରାପୁରି ଖାଣ୍ଟିକ୍ଷୀର ।

ଦ୍ୱିତୀୟ ବାଟିରେ ବରଜୁ ଗଉଡ଼ର ପାଣିମିଶା କ୍ଷୀର । ତୃତୀୟ ବାଟିରେ କ୍ଷୀରମିଶା ପାଣି । ଏବେ ଆମେ ପରୀକ୍ଷା କରିବା । ଆଛା, ତୁ ସେ ପ୍ଲାଷ୍ଟିକ୍ ଠିପିଟାକୁ ପ୍ରଥମ ବାଟିରେ ଆସ୍ତେ କରି ରଖିବୁ, ଯେମିତି ଠିପିଟା କ୍ଷୀର ଉପରେ ଭାସିବ ।''

ମୁନା ଖାଣ୍ଟି କ୍ଷୀର ଥିବା ବାଟିରେ ଠିପିଟାକୁ ଉପରମୁହାଁ କରି ଭସାଇଲା । କୁନା କହିଲା, ''ଠିକ୍ ଅଛି, ଏବେ ସେ ଲୁହା ଗୋଲିଗୁଡ଼ାକ ଗୋଟି ଗୋଟି କରି ଠିପି ଭିତରେ ପକାଅ । ଯେତେ ଅଧିକ ପକାଇବୁ ଠିପିର ଓଜନ ବଢ଼ିବ ଏବଂ ଠିପିଟା ସେତେ ଅଧିକ କ୍ଷୀର ଭିତରେ ବୁଡ଼ିବାକୁ ଲାଗିବ । ହେଲେ ହୁସିଆର, ଠିପିଟା ଯେମିତି ଓଲଟି ନପଡ଼େ କିମ୍ବା ପୂରାପୂରି ବୁଡ଼ି ନଯାଏ ।''

ମୁନା ସତର୍କତାର ସହିତ ଗୋଟି ଗୋଟି କରି ଲୁହା ଗୋଲି ଠିପିରେ ପକାଇଲା । ପାଞ୍ଚୋଟି ଗୋଲି ପକାଇବା ବେଳକୁ ଠିପିର ପ୍ରାୟ ଏକ ଚତୁର୍ଥାଂଶ କ୍ଷୀର ଭିତରେ ବୁଡ଼ିଥାଏ । କୁନା କହିଲା, ବାସ୍, ସେତିକି ଥାଉ । ଏବେ ସ୍କେଚ ପେନ୍‌ଟା ଆଣ । କ୍ଷୀର ଭିତରେ ଠିପିର ଯେତିକି ଅଂଶ ବୁଡ଼ି ରହିଛି, ସେଠାରେ ଗୋଟେ ଚିହ୍ନ ଦେ' ।

ମୁନା ଚିହ୍ନ ଦେଲା । କୁନା କହିଲା, ଏବେ ଠିପିଟାକୁ ପ୍ରଥମ ବାଟିରୁ ବାହାର କରି ଦ୍ୱିତୀୟ ବାଟିରେ ଭସାଅ । ଦେଖିବୁ ଚିହ୍ନଟା କ୍ଷୀର ଭିତରେ ବୁଡ଼ି ରହୁଛି କି ଉପରକୁ ରହୁଛି ।



ମୁନା ଠିପିଟାକୁ ଦ୍ୱିତୀୟ ବାଟିରେ ଭସାଇ ଧ୍ୟାନ ସହକାରେ ଦେଖିଲା, କହିଲା, ''ଆରେ, ଚିହ୍ନଟା'ତ ବୁଡ଼ିଗଲା ! ତା' ମାନେ ଠିପିର ଅଧିକ ଅଂଶ ଏଥିରେ ବୁଡ଼ି ରହିଲା ।'' କୁନା କହିଲା, ହଁ ସେଠାରେ ଆଉ ଗୋଟେ ଚିହ୍ନ ଦେ' । ତା'ପରେ ତାକୁ ଆଣି ତୃତୀୟ ବାଟିରେ ଭସାଅ । ମୁନା ତାହା ହିଁ କଲା । ତୃତୀୟ ବାଟିରେ ଦେଖାଗଲା ଠିପିଟା ଆହୁରି ଅଧିକ ମାତ୍ରାରେ ବୁଡୁଛି । ସେଠାରେ ମଧ୍ୟ ଗୋଟେ ଚିହ୍ନ ଦିଆଗଲା ।

ମୁନା ଆଶ୍ଚର୍ଯ୍ୟରେ ପଚାରିଲା, ''ଭାଇ, ତିନୋଟି ଯାକ ବାଟିରେ ତ କ୍ଷୀର କିମ୍ବା ପାଣିମିଶା କ୍ଷୀର ଅଛି । ଠିପିର ଓଜନ ସବୁଠି ସମାନ । ତାହାହେଲେ କେଉଁଥିରେ ଅଧିକ ଏବଂ କେଉଁଥିରେ କମ୍ ବୁଡୁଛି କାହିଁକି ?''

କୁନା କହିଲା, ଅସଲ ରହସ୍ୟ ତ' ସେଇଠି ! ତିନୋଟିଯାକ ବାଟିରେ ପ୍ରାୟ ଏକା ପରିମାଣର ଏବଂ ଏକା ପ୍ରକାର ତରଳ ପଦାର୍ଥ ଅଛି ସତ, କିନ୍ତୁ ସେଗୁଡ଼ିକର ଆପେକ୍ଷିକ ଘନତ୍ୱ ଏବଂ ଓଜନ ଏକା ନୁହେଁ । ଆର୍କମିଡ଼ିସ୍‌ଙ୍କ ପ୍ଲବନ ନିୟମ ଅନୁସାରେ ଆମେ ଜାଣିଛେ, କୌଣସି ତରଳ ପଦାର୍ଥ ବା ଜଳ ଉପରେ ଯଦି କୌଣସି ବସ୍ତୁ ଭାସେ, ତାହାହେଲେ ବସ୍ତୁଟିକୁ ତା' ଓଜନ ସମାନୁପାତର ଜଳ ଅପସାରଣ କରିବାକୁ ପଡ଼ିଥାଏ । ଅପସାରିତ ତରଳ ପଦାର୍ଥ ଯଦି ଅଧିକ ଘନ ଓ ଓଜନିଆ ହୋଇଥିବ, ତାହାହେଲେ ତା' ପରିମାଣ କମ୍ ହେବ । ସେହି କମ୍ ପରିମାଣର ତରଳ ପଦାର୍ଥ ଅପସାରଣ କରିବା ପାଇଁ ବସ୍ତୁଟିର କମ୍ ଅଂଶ ବୁଡ଼ିବ । ଜଳର ଘନତ୍ୱ ଯଦି କମ୍ ଥିବ, ତାହାହେଲେ ତା' ବିପରୀତ ନିୟମ ଅନୁସାରେ ବସ୍ତୁଟିର ଅଧିକ ଅଂଶ ବୁଡ଼ି ଅଧିକ ତରଳ ପଦାର୍ଥକୁ ଅପସାରିତ କରିବ ।

ଏହି ନିୟମ ଅନୁସାରେ କ୍ଷୀର ଯଦି ଖାଣ୍ଟି ଅର୍ଥାତ୍ ମୋଟା ହେବ ତା' ଆପେକ୍ଷିକ ଘନତ୍ୱ ଅଧିକ ହେବ ଏବଂ ଏ ଠିପିଟା ପ୍ରଥମ ଚିହ୍ନ ପର୍ଯ୍ୟନ୍ତ ବୁଡ଼ିବ । ଅଳ୍ପ ପତଳା ହେଲେ ଘନତ୍ୱ କମିଯିବ ଏବଂ ଦ୍ୱିତୀୟ ଚିହ୍ନ ପର୍ଯ୍ୟନ୍ତ ବୁଡ଼ିବ । ଆହୁରି ଅଧିକ ପତଳା ହେଲେ ତୃତୀୟ ଚିହ୍ନ ଯାଏ ବୁଡ଼ିବ । କେବଳ କ୍ଷୀର ନୁହେଁ, ଯେକୌଣସି ତରଳ ପଦାର୍ଥର ଘନତ୍ୱ ଏଥିରୁ ଜାଣି ହେବ ।

ଏହି ପରୀକ୍ଷାଟି ଆମେ ଯଦି ଲୁଣ ପାଣି, ଚିନି ପାଣି କିମ୍ବା ଚୂନ ପାଣି ପରି ଦ୍ରବଣକୁ ନେଇ କରିବା, ଆହୁରି ଭଲ ଭାବରେ ଜାଣି ପାରିବା । ହାଇଡ୍ରୋମିଟର ଏହି ନିୟମ ଅନୁସାରେ ହିଁ ତିଆରି ହୋଇଛି ।

ମୁନା ଖୁସିରେ କହିଲା, ବାଃ.... ବଡ଼ ସହଜ ତ । ଭାଇ ଠିପିଟା ଠିକ୍ ଏମିତି ଥାଉ । କାଲି ସେ ବରଜୁ ଗଉଡ଼ ଆସୁ । ମିଛ କହି ଗାଲୁ ମାରିବା ମଜା ଚଖେଇ ଦେବା ।



# ମନୁଆର ମନ ବୁଝିଲା

'ମନୋରଂଜନ' ତା' ସ୍କୁଲ ନାଁ । ସମସ୍ତେ ଡାକନ୍ତି ତାକୁ ମନୁଆ ବୋଲି । ନାଁ ଯେମିତି, ପିଲାଟିର ସ୍ୱଭାବ ମଧ୍ୟ ସେମିତି । ଟିକିଏ ଏକବୁଝା । କୌଣସି ଯୁକ୍ତିକୁ ସେ ମନ ନ'ମାନିବା ପର୍ଯ୍ୟନ୍ତ ଗ୍ରହଣ କରେନି । ନିଜେ ନବୁଝି, ନିଜ ଆଖିରେ ନଦେଖି କାହା କଥାକୁ ସେ ସହଜରେ ବିଶ୍ୱାସ କରେନାହିଁ ।

ପିଲାଟି ଦିନୁ ତା'ର ଏ ସ୍ୱଭାବ ଦେଖି ଶିକ୍ଷକମାନେ କହନ୍ତି, 'ମନୋରଂଜନ' ବଡ଼ ହେଲେ ବୈଜ୍ଞାନିକଟିଏ ହେବ । ବଡ଼ହେଲେ କଣ ହେବ କି ନହେବ ତାହା ତ ଭବିଷ୍ୟତ କହିବ । କିନ୍ତୁ ଏ ଗୁଣ ଯୋଗୁଁ ତା ବାପା-ବୋଉ ବେଳେବେଳେ ବଡ଼ ଅଡୁଆରେ ପଡ଼ନ୍ତି ।

ଦିନେ ସେ ତା' ବୋଉଙ୍କ ସାଙ୍ଗରେ ବଗିଚାରେ ବୁଲୁଥିଲା । ଗୋଟେ ବିଛୁଆତି ଗଛକୁ ଦେଖାଇ ବୋଉ କହିଲେ, ''ମନୁଆ, ଏ ଗଛକୁ ଚିହ୍ନିଥା । ଯା ପତ୍ର ଦେହରେ ଲାଗିଲେ ଭାରି କୁଣ୍ଡେଇ ହୁଏ ।''

ମନୁଆ ପଚାରିଲା, ବଗିଚାରେ ତ ଏତେ ଗଛପତ୍ର ଅଛି । କେହି ତ କୁଣ୍ଡେଇ ହୁଅନ୍ତିନି, ଏ କାହିଁକି ହୁଏ ?

''କାରଣ ଏ ହେଉଛି ବିଛୁଆତି । ଦେଖିଲୁ, ଯା' ପତ୍ର ଉପରେ ସଂବାଳୁଆ ଲୋମ ପରି କେମିତି ଶଙ୍ଖୁ ଅଛି । ଏଗୁଡ଼ାକ ବିଷାକ୍ତ । ଏ ପତ୍ରକୁ ଛିଣ୍ଡାଇ କେବେ ହାତରେ ଧରିବୁନି ।'' ତା' ବୋଉ ବୁଝାଇଲେ । ମନୁଆ ପୁଣି ପ୍ରଶ୍ନ କଲା, ''ଏମିତି ଲୋମଥିବା ପତ୍ର ତ ମୁଁ ଆଉରି କେତେକ ଗଛରେ ବି ଦେଖିଛି । ସେ ପତ୍ର ତ କୁଣ୍ଡେଇ ହୁଏନି, ବିଛୁଆତି କାହିଁକି କୁଣ୍ଡେଇ ହୁଏ?''

ବୋଉ ବିରକ୍ତ ହେଇ କହିଲେ, ''ଦେଖ ମନୁଆ, ମୁଁ ଜାଣିଛି ବୋଲି ତୋତେ

ସତର୍କ କରିଦେଲି । ତେଣିକି ତୋ ଇଚ୍ଛା ।’’

ସେତିକିରେ ବି ମନୁଆର ମନ ମାନିଲାନି । ବୋଉ ଚାଲିଗଲା ପରେ ସେ ଆସ୍ତେ କରି ପତ୍ରଟିଏ ଛିଣ୍ଡାଇ ଆଣି କେମିତି କୁଣ୍ଡେଇ ହୁଏ ଜାଣିବା ପାଇଁ ଦେହରେ ଲଗାଇଲା । ତା’ପରେ କଣ ହେଇଥିବ, ପିଲାମାନେ ତୁମେ ବୁଝିପାରୁଥିବ ।

ଯା’ହେଉ ମନୁଆର ଅନେକ କୀର୍ତ୍ତି ଭିତରୁ ଏ ଗୋଟେ ଛୋଟ ଉଦାହରଣ । ମନୁଆ ଚତୁର୍ଥ ଶ୍ରେଣୀରେ ପଢ଼େ । ତା’ ବଡ଼ ଭଉଣୀ ଉମା ପଢ଼େ ସପ୍ତମରେ । ଥରେ



ଭାଇ ଭଉଣୀ ଦୁହେଁ ବାପାଙ୍କ ସାଙ୍ଗରେ ଯାଇଥିଲେ ବଜାରକୁ । ଦୁହିଁଙ୍କ ପାଇଁ ଦୁଇହଳ ଜାମା କିଣେଇବା ପାଇଁ ବିରେନ୍ଦ୍ରବାବୁ ସେମାନଙ୍କୁ ନେଇ ଗୋଟେ ରେଡ଼ିମେଡ଼ ଜାମା ଦୋକାନରେ ପହଞ୍ଚିଲେ । ଜାମା ବଛା ଚାଲିଲା । ଉମା ଗୋଟେ ଫିକା ଗୋଲାପି ରଙ୍ଗର ଫ୍ରକ୍ ପସନ୍ଦ କଲା । ମନୁଆ ଅଧଘଣ୍ଟାଏ କାଳ ଘଣ୍ଟାଘଣ୍ଟି କରିବା ପରେ ଗାଢ଼ କଳା

ରଙ୍ଗର ଗୋଟେ ଟି-ସାର୍ଟ ବାଛିଲା । ତା' ପସନ୍ଦ ଦେଖି ବିରେନ୍ଦ୍ରବାବୁ ଅଡୁଆରେ ପଡ଼ିଲେ । କାରଣ ସେ ଯେଉଁ ଜାମାଟା ବାଛିଥିଲା, ଏକେ'ତ କଳା ରଙ୍ଗର, ପୁଣି ମୋଟା କପଡ଼ା । ଆଗକୁ ଖରାଦିନ ଆସୁଛି । ପିନ୍ଧିଲେ ଭାରି ଗରମ ଲାଗିବ । ମନୁଆ ସେ ଜାମାଟିକୁ ଥରେ ଅଧେ ପିନ୍ଧିବା ପରେ ଆଉ ତା' ନାଁ ଧରିବନି । ଅଯଥାରେ ପଇସା ପାଣିରେ ପଡ଼ିବ । କିନ୍ତୁ ତାକୁ ମନାକଲେ କି ବୁଝେଇଲେ, ସେ କ'ଣ ସହଜେ ମାନିବା ପିଲା ?

ତଥାପି ବିରେନ୍ଦ୍ରବାବୁ ପୁଅକୁ ବୁଝେଇବାକୁ ଚେଷ୍ଟା କଲେ, "ଦେଖ୍ ମନୁଆ, ତୋ ଅପା କେଡ଼େ ସୁନ୍ଦର ପତଳା ଆଉ ହାଲକା ରଙ୍ଗର ଜାମାଟିଏ ବାଛିଚି । ତୋ ଜାମାଟି ମଧ୍ୟ ସୁନ୍ଦର, ହେଲେ କପଡ଼ାଟା ଟିକିଏ ମୋଟା । ରଙ୍ଗ ମଧ୍ୟ ଗାଢ଼ କଳା । ଏମିତିକା ଜାମା ଖରାଦିନେ ପିନ୍ଧିଲେ ଭାରି ଗରମ ଲାଗିବ । ୟାକୁ ଛାଡ଼ି ତୁ ଆଉ ଗୋଟେ ରଙ୍ଗର ଜାମା ବାଛ୍ ।"

ମନୁଆ ପଚାରିଲା, "ତମେ ସତ କହୁଚ ବାପା..... କଳା ଜାମା ପିନ୍ଧିଲେ ବେଶି ଗରମ ଲାଗେ ?"

"ଆରେ..... ହଁ । ସାଦା ରଙ୍ଗରେ ସୂର୍ଯ୍ୟ ରଶ୍ମି ପ୍ରତିଫଳିତ ହୋଇଯାଏ । କଳା ରଙ୍ଗ ଉତ୍ତାପକୁ ନିଜ ଭିତରକୁ ଶୋଷି ନିଏ । ତେଣୁ ଗରମ ଲାଗେ । ଖରାଦିନେ ଲୋକେ ହାଲକା ଓ ସାଦା ରଙ୍ଗର ପୋଷାକ ପିନ୍ଧନ୍ତି ।" ବାପା ପୁଣି ବୁଝାଇଲେ ।

ମନୁଆ କହିଲା, "ବାପା..... କଳା ଜାମା ପିନ୍ଧିଲେ ଗରମ ଲାଗେ ବୋଲି ତମେ ସିନା କହୁଚ, ମୁଁ'ତ ଜାଣିନି । ତେଣୁ ଏ ପୋଷାକଟା ନେଇ ପରୀକ୍ଷା କରି ଦେଖିବି ।"

ବିରେନ୍ଦ୍ରବାବୁ ବିରକ୍ତ ହୋଇ କହିଲେ, "ଆରେ ବାବୁ, ସବୁ କଥା କ'ଣ ନିଜଠି ପ୍ରୟୋଗ କରି ହିଁ ପରୀକ୍ଷା କରାଯାଏ ? ଏମିତି ବୋକାମି କଲେ କେଉଁ ଦିନ ତୁ ବିପଦରେ ପଡ଼ିଯାଇ ପାରୁ ।"

"ତା'ହେଲେ ମୁଁ କେମିତି ଜାଣିବି ଯେ ?" ମନୁଆ ଓଲଟା ପ୍ରଶ୍ନ କଲା । ବାପା କହିଲେ, ତା' ପାଇଁ କେତୋଟି ସରଳ ପରୀକ୍ଷା ଅଛି । ଘରକୁ ଚାଲ ମୁଁ ତୋତେ ଦେଖେଇ ଦେବି ।"

ଉମା ଶେଷରେ ଗୋଟେ ପ୍ରସ୍ତାବ ଦେଲା, "ବାପା, ଏବେ ଆମେ ଜାମା ନେବାନି । ଘରକୁ ଯାଇ ମନୁଆକୁ ପରୀକ୍ଷାଟି କରି ଦେଖାଇବା । ତା'ପରେ ସେ ଯେଉଁ ରଙ୍ଗର ଜାମା ପସନ୍ଦ କରିବ ତାକୁ କିଣାଇ ଦେବା ।"

ଉମାର ପ୍ରସ୍ତାବ ବାପାଙ୍କ ମନକୁ ପାଇଲା । ମନୁଆ ବି ଏ ସର୍ତ୍ତରେ ରାଜିହେଲା । ଜାମା ନକିଣି ସେମାନେ ଘରକୁ ଫେରିଲେ । ବିରେନ୍ଦ୍ରବାବୁ ଝିଅକୁ କହିଲେ, "ଉମା ତୁ'ତ ଜାଣିଛୁ, କଳା ରଙ୍ଗ କିପରି ସୂର୍ଯ୍ୟରଶ୍ମିକୁ ଶୋଷଣ କରେ, ପରୀକ୍ଷାଟିଏ କରି ତୋ ଭାଇକୁ ବୁଝାଇଦେଲୁ ।" ଉମା ଏଥିରେ ରାଜି ହେଲା ।

ସେ ବାପାଙ୍କ ଲାବୋରେଟେରୀରୁ ଦୁଇଟି ପରୀକ୍ଷା ନଳୀ ଏବଂ ପରୀକ୍ଷା ନଳୀ ଷ୍ଟାଣ୍ଡଟା ଆଣିଲା । ଦୁଇ ଫର୍ଦ୍ଦ ମୋଟା କାଗଜ ଏବଂ ଗାଢ଼ କଳା ରଙ୍ଗର ଡ୍ରଇଂ କାଳି ଶିଶିଟା ମଧ୍ୟ ଯୋଗାଡ଼ କଲା । ପ୍ରଥମେ ସେ ଫାଳେ କାଗଜକୁ କାଳିରେ ଭଲ ରୂପେ ଭିଜାଇ ଖରାରେ ଶୁଖାଇ ଆଣିଲା । କଳା କାଗଜଟିକୁ ପ୍ରଥମ ପରୀକ୍ଷା ନଳୀ ଉପରେ ଗୁଡ଼ାଇ ରବରବେଣ୍ଡରେ ବାନ୍ଧି ଦେଲା । ଅନ୍ୟ ପରୀକ୍ଷା ନଳୀ ଉପରେ ଆଉ ଖଣ୍ଡେ ଧଳା କାଗଜ ଗୁଡାଇ ଠିକ୍ ସେମିତି ବାନ୍ଧି ଦେଲା । ଦୁଇଟିଯାକ ପରୀକ୍ଷା ନଳୀରେ ସମାନ ପରିମାଣର ପାଣି ପୂରାଇ ଷ୍ଟାଣ୍ଡ ଉପରେ ଠିଆ ରଖିଲା । ତା'ପରେ ସେ ବାହାର କଲା ଗୋଟେ ଯନ୍ତ୍ର । ମନୁଆକୁ ପଚାରିଲା, "ଏଇଟା କ'ଣ ଜାଣିଚୁ ?"

ମନୁଆ କହିଲା, "ଏଇଟା ପରା ଜ୍ୱର ମାପିବା ଯନ୍ତ୍ର, 'ଥର୍ମୋମିଟର' ।

ହଁ ଥର୍ମୋମିଟର, କିନ୍ତୁ ଜ୍ୱର ମାପିବା ଯନ୍ତ୍ର ନୁହେଁ, ଜ୍ୱର ସମୟରେ ଦେହର ଉତ୍ତାପ ମାପିବା ଯନ୍ତ୍ର । ଏଥିରେ ସବୁ ପ୍ରକାର ଉତ୍ତାପ ମପାଯାଇପାରେ । ଏହାର ମାପ କେମିତି ହୁଏ ତୁ ଜାଣିଚୁ ତ ?"

ମନୁ କହିଲା, "ହଁ...ଦେହରେ ଜ୍ୱର ଥିଲେ ୟା ଭିତରେ ଥିବା ପାରଦ ଚିହ୍ନଟା ବଢ଼ିଯାଏ । ସେ ଚିହ୍ନରୁ ଉତ୍ତାପ କେମିତି ଜାଣିହୁଏ ବାପା ମୋତେ ଶିଖାଇ ଦେଇଥିଲେ ।"

ଉମା ଥର୍ମୋମିଟର ମୁଣ୍ଡକୁ ଦୁଇଟିଯାକ ପରୀକ୍ଷା ନଳୀର ପାଣିରେ ଅଲଗା ଅଲଗା ବୁଡ଼ାଇ ମନୁଆକୁ କହିଲା, "ଦେଖିଲୁ.... ପାରଦ ଚିହ୍ନ ବଢୁଛି କି କମୁଛି ?"

ମନୁଆ ଧ୍ୟାନ ସହକାରେ ଦେଖି କହିଲା, "ନା'ତ ବଢୁନି କି କମୁନି । ଠିକ୍

ଅଛି, ଆମେ ଏବେ ଷ୍ଟାଣ୍ଡ ସହିତ ଏ ପରୀକ୍ଷା ନଳୀ ଦୁଇଟିକୁ ନେଇ ଖରାରେ କିଛି ସମୟ ରଖିଦେବା । ବର୍ତ୍ତମାନ ବାରଟା ବାଜିଲା । ଠିକ୍ ଦୁଇଟା ବେଳେ ଆସି ପୁଣି ଦେଖିବା ।''

ଭାଇ ଭଉଣୀ ଦୁହେଁ ଖିଆପିଆ ସାରି ଠିକ୍ ଦୁଇଟା ବେଳେ ଆସି ପରୀକ୍ଷା ନଳୀ ପାଖରେ ପହଞ୍ଚିଗଲେ । ଉମା ପ୍ରଥମେ ଥର୍ମୋମିଟରଟାକୁ ଧଳା କାଗଜ ଗୁଡ଼ା ହୋଇଥିବା ପରୀକ୍ଷା ନଳୀରେ ବୁଡ଼ାଇ ଆଣି ମନୁଆକୁ କହିଲା, ''ଦେଖିଲୁ ମନୁଆ ପାରଦ ଉଠିଛି କି ଖସିଛି ?''

ମନୁଆ କିଛି ସମୟ ନିରୀକ୍ଷଣ କରି କହିଲା, ନା'ତ ସେମିତି କିଛି ଜାଣି ହେଉନି । ତା'ପରେ ଉମା ଥର୍ମୋମିଟରକୁ ଅନ୍ୟ ପରୀକ୍ଷା ନଳୀରେ ବୁଡ଼ାଇ ଆଣିଲା ଏବଂ ମନୁଆକୁ ଦେଲା ।

ମନୁଆ ପାରଦ ଚିହ୍ନକୁ ଦେଖୁ ଦେଖୁ ଆଶ୍ଚର୍ଯ୍ୟରେ କହିଲା, ''ଆରେ....ଏଥିରେ ପାରଦ ଚିହ୍ନ ତ ବଢ଼ିଯାଇଛି !''

ଠିକ୍ କହିଲୁ, ତା' ମାନେ ଏ ପରୀକ୍ଷା ନଳୀର ପାଣି ଗରମ ହୋଇଯାଇଛି । କିନ୍ତୁ ମନୁଆ, ଆମେ ତ ଉଭୟ ପରୀକ୍ଷା ନଳୀରେ ଏକା ପାଣି ପୂରାଇ ଏକା ଜାଗାରେ ରଖିଲେ । ସେଥିରୁ ଗୋଟିଏ ପରୀକ୍ଷା ନଳୀର ପାଣି ଗରମ କଲା କିଏ ? ... ଏଇ କଳା କାଗଜ ଖଣ୍ଡିକ ! ଏଥିରୁ ଆମକୁ ପ୍ରମାଣ ମିଳିଲା ଯେ ଧଳା ରଙ୍ଗରେ ସୂର୍ଯ୍ୟରଶ୍ମି ପ୍ରତିଫଳିତ ହେବା ଯୋଗୁଁ ତା' ଭିତରେ ଥିବା ପାଣି ଗରମ ହେଲା ନାହିଁ । କଳା କାଗଜଟି ସୂର୍ଯ୍ୟ ଉତ୍ତାପକୁ ଶୋଷଣ କରି ପରୀକ୍ଷା ନଳୀ ସହିତ ପାଣିକୁ ଗରମ କରିବାରେ ସାହାଯ୍ୟ କଲା ।

''ଠିକ୍ ସେମିତି ଖରାରେ ଯଦି ତୁ କଳା ଜାମା ପିନ୍ଧି ବାହାରିବୁ, ଏତେ ଗରମ ଲାଗିବ ଯେ ଅଳ୍ପ ସମୟ ପରେ ଜାମାକୁ କାଢ଼ି ଫିଙ୍ଗିଦେବାକୁ ଇଚ୍ଛା ହେବ । ଏବେ ବି' ତୁ ଯଦି ସେ କଳା ଟି-ସାର୍ଟଟା ହିଁ କିଣିବୁ ବୋଲି ଭାବୁଚୁ ତା'ହେଲେ ଚାଲ ନେଇ ଆସିବା ।''

ମନୁଆ କହଲା, ''ନା, ଅପା ମୁଁ ଗୋଟେ ଧଳା ଜାମା କିଣାଇବା ପାଇଁ ବାପାଙ୍କୁ କହିବି ।'' 

# ଯେତେ ଗରମ ସେତେ ନରମ

ବିନି ଆଉ ରିନି ଦୁଇ ସାଙ୍ଗ । ରିନି ବିନିଠାରୁ ତିନି ବର୍ଷ ସାନ । ବିନି ପଢ଼େ ପଞ୍ଚମ ଶ୍ରେଣୀରେ, ରିନି ତୃତୀୟରେ । ଦୁହେଁ ସାଙ୍ଗ ହେଇ ସ୍କୁଲକୁ ଯିବାଆସିବା କରନ୍ତି । ବିନି ବଡ଼, ତେଣୁ ରିନିକୁ ନିରାପଦରେ ସ୍କୁଲକୁ ନେବା ଆଣିବା ଦାୟିତ୍ୱ ତା'ର ।

ସେମାନଙ୍କ ସ୍କୁଲ ଯିବା ବାଟରେ ଗୋଟେ ରେଳ ଫାଟକ ପଡ଼େ । ଦୁହେଁ ବଡ଼ ହୁସିଆର୍‌ରେ ଦୁଇ ଆଡ଼କୁ ଚାହିଁ ରେଳ ଲାଇନ୍ ପାର କରନ୍ତି । ଦିନେ ସେମାନେ ଫେରିବା ବେଳେ ଦେଖିଲେ ଦଳେ ଲୋକ ରେଳ ଲାଇନ୍ ଉପରେ କାମ କରୁଛନ୍ତି । ଲୋକମାନେ ଦୁଇ ରେଳ ଧାରଣା ଯୋଡ଼ା ହୋଇଥିବା ଜାଗାରେ ବଡ଼ ବଡ଼ ରେଞ୍ଚି ଲଗାଇ ବୋଲ୍‌ଟ କଷୁଥିଲେ । ବିନି ଓ ରିନି କିଛି ସମୟ ଠିଆ ହୋଇ ସେମାନଙ୍କ କାମ ଦେଖିଲେ । ଶ୍ରମିକମାନେ କାମ ସାରି ଚାଲିଗଲେ । ରିନି ବିନିକୁ କହିଲା, ''ବିନି ଅପା, ଲୋକଗୁଡ଼ାକ କେଡ଼େ ବେହୁସିଆର୍ ଦେଖିଲ । ଦୁଇ ରେଳ ମଝିରେ ଏତେ ଗୁଡ଼ାଏ ଫାଙ୍କ ରଖି ସେମାନେ କାମ ଛାଡ଼ି ଚାଲିଗଲେ । ଏବେ ଯଦି ରେଳ ଗାଡ଼ି ଆସିବ, ଦୁର୍ଘଟଣା ଘଟିବନି ?''

ବିନି କହିଲା, ''ଆଲୋ ବୋକି, ତୁ ଜାଣିନୁ କି ? ପ୍ରତି ଦୁଇଟି ରେଳ ଧାରଣା ମଝିରେ ଏମିତି ଫାଙ୍କ ରଖାଯାଏ ।''

ରିନି ଆଶ୍ଚର୍ଯ୍ୟରେ ଆଖି ବଡ଼ ବଡ଼ କରି ପ୍ରଶ୍ନ କଲା, ''ଜାଣିଶୁଣି ଫାଙ୍କ ରଖାଯାଏ । କିନ୍ତୁ କାହିଁକି ?''

''କାହିଁକିର ଉତ୍ତର ତୁ ନିଜେ ଖୋଜି ବାହାର କର ।'' ଏହା କହି ବିନି ତା' ବସ୍ତାନିରୁ ଗୋଟେ ବିଚିତ୍ର ଖେଳନା ବାହାର କଲା । କହିଲା, ଯଦି ତୁ ସଠିକ୍ ଉତ୍ତର କହିଦେବୁ, ତା'ହେଲେ ଏ ପ୍ଲାଷ୍ଟିକ୍ ପ୍ରଜାପତିଟା ତୋର ।''

ବିନି କଥା ଶୁଣି ରିନି ବଡ଼ ଚିନ୍ତାରେ ପଡ଼ିଗଲା । ଭାବିଲା, ପ୍ରତ୍ୟେକ ରେଳ ଧାରଣା ତ' ମୁଣ୍ଡକୁ ମୁଣ୍ଡ ଯେତେ ଯୋଡ଼ି ହେଇ ରହିବ ରେଳଗାଡ଼ି ସେତେ ଆରାମରେ ଚାଲିବ । ଫାଙ୍କ ରଖାଯିବା କାରଣ କ'ଣ ? ବାଟ ଚାଲୁ ଚାଲୁ ସେ ଢ଼େର୍ ସମୟ ଯା

ଭିତରେ ଚିନ୍ତା କଲା । ଶେଷରେ କହିଲା, ''ବୁଝିଗଲି, ବର୍ଷାଦିନେ ଦୁଇ ରେଳ ଧାରଣା ମଝିରେ ପାଣି ତ' ଜମି ଯାଉଥିବ । ଫାଙ୍କ ନ' ରହିଲେ ପାଣି ବାହାରକୁ ଯିବ କେମିତି?''

ରିନିର ବୋକାଳିଆ ଉତ୍ତର ଶୁଣି ବିନି ପ୍ରଥମେ ଫେଁ-କିନା ହସି ପକାଇଲା । ପରେ ପୁଣି ଭାବିଲା, ନା' ରିନି ପ୍ରକୃତ କାରଣଟା ଜାଣିନି ବୋଲି ସିନା ଏକଥା କହିଲା । ବଡ଼ ହିସାବରେ ତାକୁ ସଠିକ୍ ଉତ୍ତରଟା ବୁଝାଇଦେବା ଉଚିତ ।

ତା'ପରେ ସେ ତାକୁ ବୁଝାଇଲା, ''ଦେଖ୍ ରିନି, କୌଣସି ଧାତୁ ଗରମ ଥିବା ଅବସ୍ଥାରେ ଯଦି ତା' ଉପରେ ଚାପ ପଡ଼େ ତା'ହେଲେ ଧାତୁଟି ଲମ୍ବିଯାଏ । ଖରାଦିନେ ରେଳ ଧାରଣା ଅତି ଗରମ ଅବସ୍ଥାରେ ଥାଏ । ତା' ଉପରେ ରେଳଗାଡ଼ି ଚାଲିଲେ ଯେଉଁ ଚାପ ପଡ଼େ ସେଥିରେ ରେଳ ଧାରଣା ଲମ୍ବିଯିବା ସାଧାରଣ କଥା । ପ୍ରତି ଯୋଡେଇ ଜାଗାରେ ଯଦି ଫାଙ୍କ ନ ରହିବ, ତା'ହେଲେ ମୁଣ୍ଡକୁ ମୁଣ୍ଡ ଚାପି ହୋଇ ରେଳ ଧାରଣା ବଙ୍କେଇଯିବ ଏବଂ ଦୁର୍ଘଟଣା ଘଟିବ । ସେଥିପାଇଁ ପ୍ରତି ଯୋଡେଇ ଜାଗାରେ ଫାଙ୍କ ରଖାଯାଏ, ବୁଝିଲୁ ?''

ରିନି ପଚାରିଲା, ''ସତରେ ବିନି ଅପା ଲୁହା ଗରମ ପାଇଲେ ଲମ୍ବିଯାଏ ?'' ''ନା, ନା.... ଲୁହା ଗରମ ଥିବାବେଳେ ଯଦି ତା' ଉପରେ ଚାପପଡ଼େ କିମ୍ବା ତାକୁ ଟଣାଯାଏ, ତା'ହେଲେ ଲମ୍ବିଯାଏ । ଆଚ୍ଛା, ତୁ କମାର ଶାଳରେ ଦାଆ, କଟୁରି ତିଆରି ହେବା ଦେଖିଛୁ ?''




ରିନି କହିଲା, ''ହଁ, ଲୁହାକୁ ଭାଟିରେ ପୂରାଇ ଗରମ କରି ଲାଲ କରାଯାଏ । ତା'ପରେ ତାକୁ ହାତୁଡ଼ିରେ ପିଟି ପିଟି ଦାଆ କଟୁରି ତିଆରି କରାଯାଏ ।''

''ଠିକ୍ କହିଛୁ । ଧାତୁକୁ ଗରମ କରି ପିଟିଲେ ଧାତୁ ଲମ୍ବା ହୁଏ, ହେଲେ ଏ କଥାଟା କେତେଦୂର ସତ ଆମେ ନିଜେ ମଧ୍ୟ ଜାଣି ପାରିବା । ଘରକୁ ଚାଲ ଗୋଟେ ପରୀକ୍ଷା କରି ଦେଖିବା ।'' ବିନି କହିଲା ।

ଘରେ ପହଁଞ୍ଚିବା ପରେ ରିନି ଚଟାପଟ୍ କଣ ଦି'ଟା ଖାଇ ବିନି ପାଖକୁ ଚାଲି ଆସିଲା । ବିନି ସେତେବେଳକୁ କେତୋଟି ଉପକରଣ ଯୋଗାଡ଼ କରି ରିନିର ଅପେକ୍ଷାରେ ଥାଏ । ଚାରିଖଣ୍ଡ ଗୋଟା ଇଟା, ପ୍ରାୟ ଦେଢ଼ମିଟର ଲମ୍ବର ଖଣ୍ଡେ ସରୁ ଲୁହାତାର, ଚାରିଟା ଛୋଟ ମହମବତି, ଦିଆସିଲି ଏବଂ ଖଣ୍ଡେ ଲମ୍ବା ମୋଟା କାଗଜ ପଟି, ଏତକ ଆଣି ବିନି ତା' ଟେବୁଲ୍ ପାଖରେ ରଖିଲା ।

ପ୍ରଥମେ ସେ ଗୋଟେ ଇଟାକୁ ନେଇ ଟେବୁଲ ଉପରେ, ପ୍ରାୟ ମଝାମଝି ରଖିଲା । ଆଉ ଖଣ୍ଡେ ରଖିଲା ଟେବୁଲର ଗୋଟେ ଧାରରେ । ଆଉ ଦୁଇଟି ଇଟାକୁ ସେ ଲମ୍ବା ତାରର ଦୁଇ ମୁଣ୍ଡରେ ମଜଭୁତ କରି ବାନ୍ଧି ଦେଲା । ତା'ପରେ ସେ ତାର ବନ୍ଧା ହୋଇଥିବା ଗୋଟିଏ ଇଟାକୁ ନେଇ ପ୍ରଥମ ଇଟା ଉପରେ ରଖିଲା । ତାର ବନ୍ଧା ହୋଇଥିବା ଅନ୍ୟ ଇଟାଟିକୁ ଧାରରେ ଥିବା ଇଟା ଉପର ଦେଇ ଟେବୁଲ ତଳକୁ ଝୁଲାଇ ରଖିଲା । ଏବେ ତାରଟା ଟେବୁଲ ପୃଷ୍ଠ ସହିତ ସମାନ୍ତରାଳ ଭାବେ ଦୁଇ ଇଟା ଉପର ଦେଇ ଟେବୁଲ ତଳକୁ ଝୁଲି ରହିଲା । ତା'ପରେ ସେ ଝୁଲନ୍ତା ଇଟା କଡ଼ରେ ନେଇ ଠିଆ କଲା କାଗଜ ପଟିଟିକୁ । ଇଟାଟି ଯେତିକି ଝୁଲି ରହିଛି, ସେତିକିରେ ସେ କାଗଜ ପଟିରେ ଗୋଟେ ଚିହ୍ନ ଦେଲା । ତା'ପରେ ସେ ଟେବୁଲ ଉପରେ, ଟେବୁଲ ପୃଷ୍ଠ ସହିତ ସମାନ୍ତରାଳ ଭାବେ ଲମ୍ବି ରହିଥିବା ତାର ତଳେ ମହମବତି ଚାରିଟିକୁ ଜଳାଇ ଠିଆ କଲା । ଦେଖିଲା, ଚାରୋଟିଯାକ ମହମବତିର ନିଆଁଧାସ ତାରକୁ ବାଜୁଛି ।

ମିନି ଏ ସବୁରୁ କିଛି ବୁଝିପାରୁ ନଥାଏ । ବିନି କହିଲା, ''ମିନି, କାଗଜ ପଟିରେ ମୁଁ ଯେଉଁ ଚିହ୍ନଟି ଦେଲି, ସେ ହେଉଛି ଏ ଧାତବ ତାରିଟିର ସାଧାରଣ ଲମ୍ବ । ଏବେ ମୁଁ ତାରଟିକୁ ଗରମ କରୁଛି, ତା' ସଙ୍ଗେ ସଙ୍ଗେ ଝୁଲି ରହିଥିବା ଇଟାର ଓଜନ ତାରଟିକୁ ତଳକୁ ଟାଣୁଛି । ଏବେ ଦେଖିଲୁ, ତାର ଧୀରେ ଧୀରେ ତଳକୁ ଲମ୍ବୁଛି କି ନାଇଁ ?''

ମିନି ଧ୍ୟାନ ସହକାରେ ଦେଖିବା ପରେ କହିଲା, ''ହଁ ଅପା, ତୁମେ ଯେଉଁଠି ଚିହ୍ନ ଦେଇଥିଲ, ଇଟାଟି ଧୀରେ ଧୀରେ ତା' ତଳକୁ ଖସୁଛି ।''

''ତା'ହେଲେ ଆମେ ଏଠୁ କ'ଣ ଜାଣିଲେ କହିଲୁ ?''

ମିନି କହିଲା, ''ତାରଟା ଗରମ ହୋଇ ଯେତେବେଳେ ନରମ ହେଇଗଲା, ଇଟାର ଓଜନ ହେତୁ ତଳକୁ ଲମ୍ବିଗଲା ।'' ''ବୁଝିଲୁ ତ.... ଚାଲ ଖେଳିବାକୁ ଯିବା ।''



# ମେଜିକ୍ ନୁହେଁ ବିଜ୍ଞାନ ଖେଳ

ସ୍କୁଲକୁ ଦିନେ ମେଜିକ୍‌ବାଲା ଆସିଥିଲା । ମେଜିକ୍ ସହିତ ବିଭିନ୍ନ ହାତସଫେଇ ଖେଳ ଦେଖାଇବାରେ ସେ ଥିଲା ଓସ୍ତାଦ୍ । ଏତେ ରୋମାଞ୍ଚକର ଓ କଉତୁକିଆ ଖେଳ ପିଲାମାନେ ଆଗରୁ କେବେ ଦେଖି ନଥିଲେ । ପିଲାମାନଙ୍କ ଘନଘନ କରତାଳିରେ ସ୍କୁଲ ସଭାଘର ଉଛୁଳି ଉଠିଲା । ପ୍ରାୟ ଦୁଇଘଣ୍ଟା ଧରି ଖେଳ ପ୍ରଦର୍ଶନ କରିବା ପରେ ମେଜିକ୍‌ବାଲା ଚାଲିଗଲା ।

ପିଲାମାନେ ନିଜ ନିଜ ଶ୍ରେଣୀକୁ ଫେରିଲେ । କିନ୍ତୁ ସେଦିନ ସେମାନଙ୍କ ପାଠପଢ଼ା ବନ୍ଦ । ମେଜିକ୍ ବିଷୟରେ ଚାଲିଲା ଆଲୋଚନା, ତର୍କବିତର୍କ । ବିଜ୍ଞାନ ସାର୍ ମଧ୍ୟ ଆସି ସେମାନଙ୍କ ସହିତ ଯୋଗ ଦେଲେ । ସାର୍ ପଚାରିଲେ, "ଆଚ୍ଛା ପିଲାମାନେ, ତୁମକୁ କେଉଁ ଖେଳଟା ସବୁଠୁ ମଜା ଲାଗିଲା ?"

ବିଜୁ କହିଲା, ସାର୍ ! ମୋତେ ଷ୍ଟେଜ୍ ଉପରକୁ ଡାକି ନେଇ ସେ ଯେଉଁ କଦଳୀ ଖେଳଟା ଦେଖାଇଲା, ଭାରି ମଜା ଲାଗିଲା ।

ସାର୍ କହିଲେ, "ହଁ ଖେଳ ଆରମ୍ଭ ବେଳକୁ ତୁମକୁ ସେ ଷ୍ଟେଜ୍ ଉପରକୁ ଡାକିଥିଲା, ତା'ପରେ କ'ଣ ହେଲା କହିଲ ?"

ବିଜୁ ଗଳା ଝାଡ଼ି ଆରମ୍ଭ କଲା, "ମୋତେ ସେ ଡାକିଲା । ମୁଁ ଷ୍ଟେଜ୍ ଉପରକୁ ଯାଇ ଦେଖିଲି, ଟେବୁଲ୍ ଉପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଗୋଟେ ଫଟୋ ଅଛି । ଦୀପ-ଧୂପ ଆଦି ଲାଗିଛି । ଯାଦୁଗର ମୋତେ କହିଲା, ଖେଳ ଆରମ୍ଭ ପୂର୍ବରୁ ମୋ ଠାକୁରମାନେ ଜଣେ ସଚ୍ଚା ମଣିଷ ହାତରୁ ଭୋଗ ପାଇବାକୁ ଇଚ୍ଛା କରୁଛନ୍ତି । ଯାଦୁବଳରେ ମୁଁ ଜାଣି ପାରିଲି, ତୁମେ ଜଣେ ସଚ୍ଚୋଟ ବାଳକ । ଏଇ କଦଳୀଟି ନିଅ ଏବଂ ଏହାକୁ ତିନି ଭାଗ କରି ତିନି ଠାକୁରଙ୍କୁ ଭୋଗ ଲଗାଅ । ଏହା କହି ସେ ମୋ ହାତକୁ ଗୋଟେ ବଡ଼ ପାଚିଲା କଦଳୀ ବଢ଼ାଇ ଦେଲା । କଦଳୀକୁ ଖଣ୍ଡ କରିବା ପାଇଁ ମୁଁ ଯେତେବେଳେ ଛୁରୀ ମାଗିଲି, ସେ କହିଲା, ନା' ମୋ ପାଖରେ ଛୁରୀ ନାହିଁ । କିନ୍ତୁ ତୁମକୁ ଚୋପା ନ' ଛଡ଼ାଇ କଦଳୀଟିକୁ ତିନି ଖଣ୍ଡ କରିବାକୁ ପଡ଼ିବ ।

ତା' କଥା ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । କାରଣ ଚୋପା ନ' ଛଡ଼ାଇ, ବିନା ଛୁରୀରେ କଦଳୀଟି ତିନିଖଣ୍ଡ କେମିତି ହୋଇ ପାରିବ ? ଯାଦୁଗର ପୁଣି କହିଲା, ଚିନ୍ତାକର ନାହିଁ ବାଳକ, ମୁଁ ତୁମକୁ ଗୋଟେ ମନ୍ତ୍ର ଶିଖାଇ ଦେବି । ମନ୍ତ୍ରଟି ପଢ଼ି ତୁମେ ମୋର ଏ ଯାଦୁକାଠିଟିକୁ କଦଳୀ ଦେହରେ ତିନିଥର ଛୁଆଇଁ ଦେବ । ଦେଖିବ କଦଳୀଟି ତିନିଖଣ୍ଡ ହେଇଯିବ ।

ତା'କଥା ଶୁଣି ମୋତେ ଆହୁରି ଆଶ୍ଚର୍ଯ୍ୟ ଲାଗିଲା । ତଥାପି ସେ କହିବା ଅନୁସାରେ ମୁଁ ମନ୍ତ୍ର ପଢ଼ିଲି ଏବଂ ଯାଦୁକାଠିଟିକୁ କଦଳୀ ଦେହରେ ତିନିଥର ଛୁଆଁଇ ଆଣିଲି । ତା'ପରେ ସେ ମୋତେ କଦଳୀର ଚୋପା ଛଡ଼ାଇବାକୁ କହିଲା । ମୁଁ ଛଡ଼ାଇ ଦେଖିଲି, ଆଶ୍ଚର୍ଯ୍ୟ କଥା ତା' ଭିତରେ କଦଳୀଟା ତିନିଖଣ୍ଡ ହୋଇ ରହିଥିଲା । ସାର୍.... ମୁଁ ଏବେ ବି ବୁଝିପାରନି, ସେ ଖେଳଟା ପ୍ରକୃତରେ ଯାଦୁବିଦ୍ୟା ନା' ହାତସଫେଇ ?"

ସାର୍ ହସି ହସି କହିଲେ, ବିଜୁ ତୁମେ ଯଦି ସେଠି ଚଲାକି କରି କହିଥାନ୍ତ ଯେ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ସୁଦର୍ଶନ ମଧ୍ୟ ପୂଜା ପାଆନ୍ତି ଏବଂ କଦଳୀଟା ଚାରିଖଣ୍ଡ ହେବା ଦରକାର, ତା'ହେଲେ ଯାଦୁଗର ଅଡୁଆରେ ପଡ଼ିଯାଆନ୍ତା । କାରଣ କଦଳୀଟା ଆଗରୁ ହିଁ ତିନିଖଣ୍ଡ ହୋଇ ରହିଥିଲା । ଏ ଖେଳଟା ଯେତେ ମଜାଦାର ସେତେ ସହଜ ମଧ୍ୟ । ଏବେ ତୁମ ଭିତରୁ କିଏ ଜଣେ ପାଖ ଦୋକାନକୁ ଯାଇ ଯଦି ପାଚିଲା କଦଳୀଟେ ଆଣିବ, ତା'ହେଲେ ଖେଳଟା ଏଠି କରି ତୁମମାନଙ୍କ ଦେଖାଇ ଦେବି ।

ସାର୍‌ଙ୍କ ମୁହଁରୁ ବାକ୍ୟ ନସରୁଣୁ ମୁନ୍ନା ଧାଇଁଲା ବାହାରକୁ । ସ୍କୁଲ ଗେଟ୍ ପାଖ ଦୋକାନରୁ କଦଳୀଟିଏ ଧରି ସେ ଦୁଇ ମିନିଟ୍ ଭିତରେ ପହଞ୍ଚିଗଲା । ତ୍ର ଭିତରୁ ଗୋଟେ ଲମ୍ବା ଛୁଞ୍ଚି ବାହାର କରି ସାର୍ କହିଲେ, "ଦେଖ ପିଲେ, ଏ ଛୁଞ୍ଚିଟା ହେଉଛି, ଏ ଖେଳର ମୂଳ ରହସ୍ୟ । କଦଳୀକୁ ତୁମେ ଯେଉଁଠୁ ଖଣ୍ଡ କରିବାକୁ ଚାହୁଁଛ, ଛୁଞ୍ଚିକୁ ସେଠାରେ ଫୋଡ଼ । ଛୁଞ୍ଚି ମୁନଟା ଟିକିଏ ଥୁଣ୍ଟ ଥିଲେ ଭଲ । କଦଳୀ ଭିତରେ ପଶିବା ପରେ ଏ ଗୋଟେ ଛୁରୀର କାମ କରିବ । ଧ୍ୟାନ ଦେଇ ଥିବ, ମୁନଟି ଯେପରି ଆରପାଖ ଚୋପାରେ ଫୋଡ଼ି ନ ହୁଏ; କିନ୍ତୁ ଚୋପା ପର୍ଯ୍ୟନ୍ତ ପଶିବା ଦରକାର । ତା'ପରେ ତୁମେ ଛୁଞ୍ଚିକୁ ତଳୁ ଉପରକୁ କିମ୍ବା ଉପରୁ ତଳକୁ ଆସ୍ତେ କରି ଘୂରାଇବ । ଦେଖିବ କଦଳୀଟି ଭିତରୁ ଦୁଇଗଡ଼ ହୋଇଯିବ, କିନ୍ତୁ ଚୋପାଟି ଅକ୍ଷତ ଅବସ୍ଥାରେ ରହିଥିବ । ଛୁଞ୍ଚିର ଫୋଡ଼ା ଦାଗଟା ମଧ୍ୟ

ଆଦୌ ଧରି ହେବନି । ଏପରି ଭାବରେ କଦଳୀକୁ ତୁମେ ଯେତେ ଖଣ୍ଡ କରିବାକୁ ଚାହିଁବ, କରିପାରିବ ।

ବର୍ତ୍ତମାନ ମୁଁ ଏ କଦଳୀଟିକୁ ଚାରିଖଣ୍ଡ କରୁଛି, ଦେଖ ମୁଁ କେମିତି କରୁଛି । ଏହା କହି ସାର୍ କଦଳୀର ଭିନ୍ନ ଭିନ୍ନ ସ୍ଥାନରେ ଛୁଞ୍ଚିଟିକୁ ଫୋଡ଼ି ତଳ ଉପର କଲେ । ତା'ପରେ ସେ ମୁନ୍ନାକୁ ଦେଇ ଚୋପା ଛଡ଼ାଇବାକୁ କହିଲେ । ମୁନ୍ନା ପ୍ରଥମେ ପରୀକ୍ଷା



କରି ଦେଖିଲା କଦଳୀଟି କଟା ହେବା ପରି ତା' ଚୋପା ଦେଖି ଆଦୌ ଜାଣି ହେଉନି । ତା'ପରେ ସେ ଚୋପା ଛଡ଼ାଇଲା । ଦେଖେତ କଦଳୀଟି ଅବିକଳ ଛୁରୀରେ କାଟିବା ପରି ଚାରିଗଡ଼ ହୋଇ ରହିଛି ।

ପିଲାମାନେ କହିଲେ, ବାଃ.... ଏ ତ ବଡ଼ ଚମତ୍କାର ଖେଳ । ତା'ପରେ ସାର୍ ମୁନ୍ନାକୁ ପଚାରିଲେ, ଆଚ୍ଛା ମୁନ୍ନା ତୋତେ ମଧ୍ୟ ମେଡିକ୍‌ବାଲା ଷ୍ଟେଜ୍ ଉପରକୁ ଡାକିଥଲା ନା ?

ମୁନ୍ନା କହିଲା, ''ହଁ ସାର୍ ମୁଁ ଯାଇଥିଲି । ନିଜ ହାତରେ ମୁଁ ଗୋଟେ ଦିଆସିଲିକୁ ପାଣି ଭିତରେ ବୁଡ଼ାଇ ଆସିଲି । ଅଧଘଣ୍ଟାଏ ପରେ ସେ ପାଣି ଭିତରୁ ଶୁଖିଲା ଦିଆସିଲିଟି ବାହାର କରି କାଠି ଜଳାଇଲା । ଏଇଟା କେମିତି ସମ୍ଭବ ହେଲା ସାର୍ ?''

ସାର୍ କହିଲେ, ଏ ତ' ବିଜ୍ଞାନର ଗୋଟେ ସାଧାରଣ ଖେଳ, ତୁମେମାନେ ବୁଝିପାରିଲନି କେମିତି ? ଗଗନ ଉଠି ପଡ଼ି କହିଲା, 'ସାର୍ ସେ ଖେଳର ରହସ୍ୟ ମୁଁ ଜାଣି ପାରିଛି । ମୁନ୍ନା ଦିଆସିଲିକୁ ପାଣିରେ ବୁଡ଼ାଇ ନଥିଲା; ବରଂ ଦିଆସିଲିଟିକୁ ଗୋଟେ ଛୋଟ ଖାଲୁଆ ଗିନା ଭିତରେ ରଖି ଗିନାଟିକୁ ତଳମୁହାଁ କରି ପାଣିରେ ବୁଡ଼ାଇଥିଲା । ଗିନା ତଳିରେ ଦିଆସିଲିଟି ଲାଗି ରହିବା ପରି କିଛି ବ୍ୟବସ୍ଥା ଥିବ । ଗିନାକୁ ଯେତେବେଳେ ତଳମୁହାଁ କରି ପାଣିରେ ବୁଡ଼ାଗଲା ଗିନା ଭିତରେ ଥିବା ବାୟୁ ଅପସାରିତ ହୋଇ ପାରିଲା ନାହିଁ । ଆମେ ଜାଣିଛେ ଗୋଟିଏ ସ୍ଥାନରେ ଏକା ସମୟରେ ଦୁଇଟା ବସ୍ତୁ ରହି ପାରିବ ନାହିଁ । ଗିନା ଭିତରେ ଯେହେତୁ ବାୟୁ ରହିଗଲା ଆଉ ପାଣି ପଶି ପାରିଲା ନାହିଁ । ଗିନାଟି ଓଜନିଆ ହେତୁ ପାଣି ଭିତରେ ବୁଡ଼ି ରହିଲା । ତେଣୁ ଦିଆସିଲିଟି ଶୁଖିଲା ରହିଲା ।

ଏତିକିବେଳେ ମିନି ଠିଆ ହୋଇ କହିଲା, ''ସାର୍, ମେଜିକ୍‌ବାଲା ଛୋଟବଡ଼ ତିନୋଟି କାଚ ଗ୍ଲାସ୍‌ରେ ପାଣି ଢ଼ାଳି ଯେଉଁ ଖେଳଟି ଦେଖାଇଲା, ତା' ରହସ୍ୟ ମୁଁ ଜାଣି ପାରିଛି । ସେ ଖେଳଟା ମୁଁ ମଧ୍ୟ ଦେଖାଇ ଦେଇ ପାରିବ ।''

ମିନିର କଥା ଶୁଣି କ୍ଲାସ୍‌ର କିଛି ପିଲା ଆଶ୍ଚର୍ଯ୍ୟରେ ତା' ଆଡ଼କୁ ଅନାଇଲେ । କାରଣ ସେମାନେ ଭାବୁଥିଲେ, ଅନ୍ତତଃ ସେ ଅଦ୍ଭୁତ ଖେଳଟା ଯାଦୁବିଦ୍ୟା ଦ୍ୱାରା ହିଁ ସମ୍ଭବ । ନହେଲେ ପଚାଶ ମିଲି ଲିଟିର ପାଣି ନେଇ ଦୁଇ ଶହ ମିଲି ଲିଟର ଗ୍ଲାସ୍‌ରେ ଢାଳିଲେ ଗ୍ଲାସ୍ ଭର୍ତ୍ତି ହୁଅନ୍ତା କେମିତି ?

ମିନି କହିଲା, ''ମୋତେ ଯଦି ପାଞ୍ଚ ମିନିଟ୍ ସମୟ ଦେବ, ଖେଳଟା ମୁଁ ଏଠି ତୁମମାନଙ୍କ ଆଗରେ କରି ଦେଖାଇ ଦେବି ।'' ସମସ୍ତେ କହିଲେ, ଠିକ୍ ଅଛି । ମିନି ସଙ୍ଗେ ସଙ୍ଗେ ପାଖ ଅଫିସ୍ ରୁମ୍‌କୁ ଗଲା । କିଛି ସମୟ ପରେ ଦୁଇଟି ଗ୍ଲାସ୍ ନେଇ ଆସିଲା । ଗୋଟେ ଛୋଟ ଚାହାପିଆ ଗ୍ଲାସ୍ । ସେଥିରେ ସେ ପାଣି ଭର୍ତ୍ତି କରି ଆଣିଥିଲା । ଅନ୍ୟଟି ପାଣି ପିଇବା ବଡ଼ ଗ୍ଲାସ୍ । ସେଇଟା ଖାଲି ଥିଲା । ଗ୍ଲାସ୍ ଦୁଇଟିକୁ ଧରି ସେ ବ୍ଲାକ୍‌ବୋର୍ଡ ନିକଟକୁ ଗଲା ଏବଂ ପିଲାମାନଙ୍କ ଆଡ଼କୁ ମୁହଁ କରି ଠିଆ ହେଲା ।

ପିଲାମାନଙ୍କୁ କହିଲା, ଦେଖ ମୋ ବାଁ ହାତରେ ଥିବା ଛୋଟ ଗ୍ଲାସ୍‌ରେ ପାଣି ଭର୍ତ୍ତି ହୋଇଛି, ଡାହାଣ ହାତର ବଡ଼ ଗ୍ଲାସଟା ଖାଲି ଅଛି । ଏହା କହି ସେ ବଡ଼ ଗ୍ଲାସ୍‌ଟିକୁ ଓଲଟାଇ ସମସ୍ତଙ୍କୁ ଦେଖାଇ ଦେଲା । ତା'ପରେ ସେ ଛୋଟ ଗ୍ଲାସ୍‌ର ପାଣି ଆସ୍ତେ ଆସ୍ତେ କରି ବଡ଼ ଗ୍ଲାସରେ ଢାଳିଲା । ଆଶ୍ଚର୍ଯ୍ୟର କଥା, ଦେଖୁ ଦେଖୁ ବଡ଼ ଗ୍ଲାସ୍‌ଟା ପୂର୍ଣ୍ଣ ହୋଇ ବଳକା ପାଣି ତଳେ ପଡ଼ିବାକୁ ଲାଗିଲା । ଏହା ଦେଖି କିଛି ପିଲା ଆଶ୍ଚର୍ଯ୍ୟ ଓ ଉତ୍ସାହରେ ତାଳି ମାରିବାକୁ ଲାଗିଲେ । ଆଉ କେତେ ପିଲା ପାଟି କଲେ, "ଆରେ....ଆରେ.... ଦେଖ, ବଡ଼ ଗ୍ଲାସ୍ ଭିତରେ ଆଉ ଗୋଟିଏ ଛୋଟ ଗ୍ଲାସ୍ ତଳ ମୁହାଁ କରି ରଖା ହୋଇଛି ନା' କ'ଣ !"

ସାର୍ ମୁରୁକି ହସି କହିଲେ, ଆରେ ପିଲେ ଅସଲ ରହସ୍ୟ ତ ସେଇଠି । ବଡ଼ ଗ୍ଲାସ୍ ଭିତରେ ଗୋଟିଏ ଛୋଟ ଗ୍ଲାସ ଓଲଟାଇ ରଖା ହୋଇଛି ଏବଂ ସେଇଟା ମିନି ନିଶ୍ଚୟ 'କୁଇକ୍ ଫିକ୍ସ' ଲଗାଇ ରଖିଥିବ । ନଚେତ୍ ଓଲଟାଇ ଦେଖାଇବା ବେଳେ ଖସି ପଡ଼ିଥାନ୍ତା । ତା' ଭିତରେ ଛୋଟ ଗ୍ଲାସ୍‌ଟି ରହିବା ଦ୍ୱାରା ଜଣ ହେଲା କହିଲ.... ବଡ଼ ଗ୍ଲାସର ଗୋଟେ ବଡ଼ ଅଂଶ ବାୟୁରୁଦ୍ଧ ହୋଇ ରହିଗଲା । ତା' ଭିତରେ ପାଣି ଢାଳିଲେ ଦୁଇ ଗ୍ଲାସ୍‌ର ମଝି ଭାଗରେ ଥିବା ଫାଙ୍କା ଅଂଶରେ ହିଁ ଯାହା ରହିବ ଏବଂ ଖୁବ୍ କମ୍ ପାଣିରେ ଗ୍ଲାସ୍‌ଟି ପୂର୍ଣ୍ଣ ହେବା ପରି ମନେ ହେବ ।

ଯାଦୁଗର ମଧ୍ୟ ଖେଳଟା ଠିକ୍ ଏପରି ଦେଖାଇଥିଲା; କିନ୍ତୁ ତା' ବଡ଼ ଗ୍ଲାସଟା ରଙ୍ଗିନ୍ ଥିବା ହେତୁ ଆମେ ତା' ଭିତରେ ଛୋଟ ଗ୍ଲାସ୍ ଥିବା କଥା ଦୂରରୁ ଜାଣି ପାରିଲେନି । ଆଚ୍ଛା ମିନି, ଏ ଖେଳର ରହସ୍ୟଟା ତୁ କେମିତି ଜାଣିଲୁ ?

ମିନି କହିଲା, "ସାର୍, ମୋତେ ଏ ଖେଳଟା ଏତେ ଭଲ ଲାଗିଲା ଯେ, ମୁଁ ତା' ଉପରେ ବାରମ୍ବାର ଚିନ୍ତା କଲି । ହଠାତ୍ ମୋ ମୁଣ୍ଡକୁ ଗୋଟେ ସୂତ୍ର ଆସିଲା । ଯାଦୁଗର ଠିକ୍ ଏ ପ୍ରଣାଳୀରେ ଖେଳଟା ଦେଖାଇଥିବ ବୋଲି ମୁଁ ଭାବିଲି ଏବଂ କରି ଦେଖାଇଲି ।"

ସାର୍ ମିନିର ପିଠି ଥାପୁଡ଼େଇ କହିଲେ, "ବାଃ.... ଯାହା ଜଣାଯାଉଛି ବଡ଼ ହେଲେ ତୁ ଜଣେ ବିଖ୍ୟାତ ମହିଳା ଯାଦୁଗର ହେବୁ ।" ସାର୍‌ଙ୍କ କଥା ଶୁଣି ସବୁ ପିଲା ଜୋର୍‌ରେ କରତାଳି ଦେବାକୁ ଲାଗିଲେ ।

❒

# ପିପି ପାଇଲା ପୁରସ୍କାର

ଥରେ ବରପଦା ବ୍ଲକ ଅଫିସ୍ ପଡ଼ିଆରେ ବିଜ୍ଞାନ ମେଳା ବସିଥିଲା । ଆଖପାଖ ପ୍ରାୟ ପନ୍ଦରଟି ହାଇସ୍କୁଲର ଛାତ୍ରଛାତ୍ରୀ ମେଳାରେ ଭାଗ ନେଇଥିଲେ । ମେଳା ସପ୍ତାହେ ଧରି ଚାଲିଲା । ଦିନେ 'ପିପି' ଓ ତା ସାଙ୍ଗ 'ପିଙ୍କୁ' ମେଳା ଦେଖିବାକୁ ବାହାରିଲେ ।

ଆଗରୁ ସେମାନେ କେବେ ବିଜ୍ଞାନ ମେଳା ଦେଖି ନଥିଲେ । ବିଜ୍ଞାନର ବିଭିନ୍ନ ବିଷୟ ଜାଣିବା ପାଇଁ ପିପିର ଭାରି ଆଗ୍ରହ । ତା ବଡ଼ଭାଇ ବୁନା ହାଇସ୍କୁଲରେ ପଢ଼େ । ସେ ବେଳେବେଳେ ବିଜ୍ଞାନର ବିଭିନ୍ନ ପରୀକ୍ଷା କରି ପିପିକୁ ଦେଖାଏ । ଗୋଟେ ଗୋଟେ ପରୀକ୍ଷା ପିପିକୁ ଲାଗେ ମେଜିକ୍ ଦେଖିବା ପରି । କିନ୍ତୁ ସେ ଖେଳର ଅସଲ ବୈଜ୍ଞାନିକ କାରଣଟି ବୁନା ଯେତେବେଳେ କହେ ତାକୁ ଆହୁରି ଆଶ୍ଚର୍ଯ୍ୟ ଲାଗେ । ବିଜ୍ଞାନ ପ୍ରତି ପିପିର ଆଗ୍ରହ ଦେଖି ସହଜରେ କରି ହେଉଥିବା କେତୋଟି ବିଜ୍ଞାନ ଖେଳ ବୁନା ତାକୁ ଶିଖାଇ ଦେଇଥିଲା ।



ସେଦିନ ପିପି ଓ ପିଙ୍କୁ ମେଳାରେ ପହଞ୍ଚି ବିଭିନ୍ନ ପ୍ରକାର ମଜାଦାର ଖେଳ ଦେଖିଲେ । ପଡ଼ିଆରେ ଧାଡ଼ି ଧାଡ଼ି ହୋଇ କପଡ଼ା ଘେରା ଷ୍ଟଲମାନ ତିଆରି ହୋଇଥିଲା । ତା' ଭିତରେ ବିଜ୍ଞାନ ସଂପର୍କୀୟ ନନା ପ୍ରକାର ପରୀକ୍ଷାମୂଳକ ଖେଳ ଏବଂ କଉତୁକିଆ କାରିଗରୀ ବିଦ୍ୟା ସବୁ ଦେଖା ହେଉଥିଲା । ସଫାସୁତରା ୟୁନିଫର୍ମ ପିନ୍ଧା ପୁଅଝିଅମାନେ ଷ୍ଟଲ ଆଗରେ ଠିଆ ହୋଇ ନିଜ ନିଜ ବିଜ୍ଞାନ ଖେଳ ସଂପର୍କରେ ଦର୍ଶକମାନଙ୍କୁ ବୁଝାଉଥାନ୍ତି ।

ଦୁଇ ସାଙ୍ଗ ଗୋଟେ ଷ୍ଟଲ ପାଖରେ ଅଟକି ଗଲେ । ଦେଖିଲେ, ଗୋଟେ ଛୋଟ କାଗଜ କଡ଼େଇ ନିଆଁ ଉପରେ ବସିଛି । ତା ଭିତରେ ପାଣି ଅଛି । ପାଣି ଝକମକ୍ ହୋଇ ଫୁଟୁଛି, କିନ୍ତୁ କାଗଜ କଡ଼େଇଟି ପୋଡ଼ି ଯାଉ ନାହିଁ । ଏ ଦୃଶ୍ୟ ଦେଖି ସେମାନଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଷ୍ଟଲ ଆଗରେ ଠିଆ ହୋଇଥିବା ପିଲାଟିକୁ ସେମାନେ ଏହାର କାରଣ ପଚାରିଲେ । ପିଲାଟି ବୁଝାଇଲା, ଦେଖ ପିଲେ, ତୁମେ ଘରେ ମଧ୍ୟ ଏ ପରୀକ୍ଷାଟି ସହଜରେ କରି ପାରିବ । ଏପରି ହେବାର କାରଣ, କାଗଜ କଡ଼େଇଟି ଗରମ ହେବାକ୍ଷଣି ତାହାର ତାପମାତ୍ରାକୁ ପାଣି ଟାଣି ନେଉଛି ଏବଂ ପାଣିର ତାପାଙ୍କ ଧୀରେ ଧୀରେ ବଢୁଛି । ଫଳରେ ପାଣି ଫୁଟୁଛି । କୌଣସି ପଦାର୍ଥର ତାପାଙ୍କ ତାର ଜ୍ୱଳନାଙ୍କ ଠାରୁ ଅଧିକ ହେଲେ ପଦାର୍ଥଟି ଜଳେ । କଡ଼େଇରେ ପାଣିଥିବା ପର୍ଯ୍ୟନ୍ତ ତା'ର ତାପାଙ୍କ ଜ୍ୱଳନାଙ୍କ ଠାରୁ କମ୍ ରହିବ । ତେଣୁ କଡ଼େଇଟି ପୋଡ଼ିବ ନାହିଁ ।

କାଗଜ କଡ଼େଇ ନ ପୋଡ଼ିବା ରହସ୍ୟ ଜାଣିବା ପରେ ଦୁଇ ସାଙ୍ଗ ପୁଣି ଆଗକୁ ଚାଲିଲେ । ଅନ୍ୟ ଏକ ଷ୍ଟଲରେ ଦେଖିଲେ ଗୋଟେ ବିଚିତ୍ର ଖେଳ । ସେଠାରେ ଗୋଟେ ଶୂନ୍ୟ ବୋତଲରୁ ଅନବରତ ପାଣି ପଡୁଥିଲା । ତଳେ ଥିବା ଗୋଟେ ସିମେଣ୍ଟ କୁଣ୍ଡରେ ପାଣି ଜମା ହେଉଥଲା । ବୋତଲଟା ତଳମୁହାଁ ହୋଇ ଖଣ୍ଡେ ସରୁ ରସିରେ ଉପରୁ ବନ୍ଧା ହୋଇ ଝୁଲି ରହିଥିଲା ।

ପିଙ୍କୁ କହିଲା, ଏ ତ' ବଡ଼ ଆଶ୍ଚର୍ଯ୍ୟଜନକ ଘଟଣା । ବୋତଲ ଭିତରକୁ ପାଣି ଆସୁଛି କୁଆଡୁ ? ପିପି କିଛି ସନ୍ଦେହ କରି ଟିକିଏ ନିରେଖି ଦେଖିଲା । ଅସଲ ରହସ୍ୟଟା ତା' ଆଖିରେ ଧରା ପଡ଼ି ଯାଇଥିଲା । ସେ ପିଙ୍କୁକୁ କହିଲା, ଦେଖ୍, କୁଣ୍ଡ ମଝିରୁ ଆଙ୍ଗୁଠି ମୋଟାର ଗୋଟେ କାଚ ନଳୀ ସଳଖ ଭାବେ ଉପରକୁ ଉଠିଛି । ତା' ସହିତ ମ୍ୟୁନିସିପାଲିଟି ପାଣି ପାଇପ୍ ଲାଇନର ସଂଯୋଗ ନିଷ୍ଚୟ ଥିବ । ପାଣି କାଚନଳୀ ଦେଇ ଆସି ନଳୀ



ମୁହଁରେ ଫୁଆରା ପରି ଉଚ୍ଛୁଳୁଛି । ବୋତଲଟା ନାଁ'କୁ ମାତ୍ର ସେଠାରେ ତଳମୁହାଁ ହୋଇ ଝୁଲୁଛି । କାଚ ନଳୀର ଉଚ୍ଛୁଳା ପାଣି ବୋତଲ ମୁହଁରେ ମାତ୍ ହୋଇ କୁଣ୍ଡରେ ପଡୁଛି । ମନେ ହେଉଛି ପାଣି ବୋତଲ ଭିତରୁ ଝରୁଛି; କିନ୍ତୁ ପ୍ରକୃତରେ ପାଣି ଉଚ୍ଛୁଳୁଛି କାଚ ପାଇପ୍ ମୁହଁରେ । ପାଣିରେ ଅଧିକ ଫେଣଥିବା ହେତୁ କାଚନଳୀଟା ସ୍ପଷ୍ଟ ଦେଖାଯାଉନି । ପିକୁ କହିଲା ବାଃ.... ବଡ଼ କଉତୁକିଆ ଖେଳ ତ ! ମୁଁ ଘରକୁ ଗଲେ ଏ ଖେଳଟା କରି ମୋ ସାନଭାଇକୁ ଦେଖାଇବି । ପିପି କହିଲା, ହଉ ଚାଲ ଆଗ ଷ୍ଟଲରେ ଭିଡ଼ ଜମିଛି, କଣ ହେଉଛି ଦେଖିବା ।

ଦୁହେଁ ଯାଇ ଭିଡ଼ ପାଖରେ ପହଞ୍ଚିଲେ । ସେ ଷ୍ଟଲର ପିଲାଟି ଜଣେ ଦର୍ଶକଙ୍କ ହାତରୁ ଦଶଟଙ୍କିଆ ନୋଟ୍‌ଟିଏ ମାଗି ନେଇଥିଲା । ନୋଟ୍‌ଟିକୁ ସେ ଡାଟିଆରେ ଥିବା କିଛି ତରଳ ପଦାର୍ଥରେ ଭିଜାଇଲା ଏବଂ ସଙ୍ଗେ ସଙ୍ଗେ ନିଆଁ ଲଗାଇ ଦେଲା । ନୋଟ୍‌ଟା ହୁତ୍‌ହୁତ୍ ହୋଇ ଜଳିବାକୁ ଲାଗିଲା । ତା'ପରେ ସେ ନୋଟ୍‌ଟିକୁ ଗୋଟେ ଖାଲି ଟିଣ ଭିତରକୁ ଫୋପାଡ଼ି ଦେଲା । ଏହା ଦେଖି ଦର୍ଶକ ଜଣକ ପାଟି କରିବାକୁ ଲାଗିଲେ । ଏତିକିବେଳେ ଆଉ ଜଣେ ପିଲା ଆସି ଦର୍ଶକଙ୍କୁ ବୁଝାସୁଝା କରି ସାନ୍ତ୍ୱନା ଦେଲା ଏବଂ ଟିଣ ଭିତରୁ ନୋଟ୍‌ଟିକୁ ଆଣି ପୁଣି ଫେରାଇ ଦେଲା । ଆଶ୍ଚର୍ଯ୍ୟର କଥା ନୋଟ୍‌ଟା ଟିକିଏ ବି ପୋଡ଼ି ନଥିଲା । ଦର୍ଶକମାନେ ଏହା ଦେଖି ପୂରା ତାଜୁବ୍ । ପିପି ପଚାରିଲା, ଭାଇ, ନୋଟ୍‌ଟା ସତରେ ପୋଡ଼ି ନଥିଲା କି ? ପିଲା ଦୁହେଁ ବୁଝାଇଲେ, ଏ ହେଉଛି ରେକ୍ଟିଫାଏଡ଼ ସ୍ପିରିଟ୍ ଏବଂ ପାଣିର କିମିଆ । ଉଭୟ ତରଳ ପଦାର୍ଥକୁ 1:6 ଅନୁପାତରେ ମିଶାଇ ସେଥିରେ କାଗଜ, କପଡ଼ା ଇତ୍ୟାଦି ବସ୍ତୁ ଭିଜାଇ ଦିଅ । ତାପରେ ତାକୁ ନିଆଁ ଲଗାଇ ଦିଅ । ରେକ୍ଟିଫାଏଡ଼ ସ୍ପିରିଟ୍ ଉଦ୍‌ବାୟୀ ଓ ଜ୍ୱଳନଶୀଳ, ତେଣୁ ଶୀଘ୍ର ଜଳିଯାଏ । କିନ୍ତୁ ମିଶ୍ରଣରେ ଥିବା ଜଳୀୟ ଅଂଶ ବସ୍ତୁଟିକୁ ଥଣ୍ଡା ରଖେ । ଫଳରେ ସେଥିରେ ନିଆଁ ଧରେ ନାହିଁ ।

ପିପି ଓ ପିକୁ ତ' ପଞ୍ଚମ ଶ୍ରେଣୀର ଛାତ୍ର । ରସାୟନ ବିଜ୍ଞାନ ସଂପର୍କରେ ସେମାନେ ବା କ'ଣ ବୁଝି ପାରିବେ । ତେଣୁ ଚୁପ୍‌ଚାପ୍ ସେମାନେ ଆଗକୁ ଚାଲିଲେ । ଆଗରେ ଗୋଟେ ଷ୍ଟଲରେ ଥଣ୍ଡା ପାନୀୟ ବଣ୍ଟା ହେଉଥିଲା । ପିଲାଟି ଦର୍ଶକମାନଙ୍କୁ ଡାକ ଛାଡୁଥାଏ, ''ଭାଇମାନେ ଏଠାକୁ ଆସନ୍ତୁ, ବିନା ମୂଲ୍ୟରେ ଥଣ୍ଡା ପିଅନ୍ତୁ ଏବଂ ଉପହାର ନିଅନ୍ତୁ ।'' ଦୁଇସାଙ୍ଗ କୌତୂହଳୀ ହୋଇ ସେଠାକୁ ଗଲେ । ପିଲାଟି ଗୋଟେ ଥଣ୍ଡା କୋକାକୋଲା ବୋତଲ ପିକୁ ଆଡ଼କୁ ବଢ଼ାଇ ଦେଇ କହିଲା, 'ଏ ବୋତଲର

ସବୁତକ ପାନୀୟ ଯଦି ତୁମେ ପିଇ ଦେଇ ପାରିବ, ତା'ହେଲେ ବଢ଼ିଆ ଉପହାରଟିଏ ମିଳିବ ।''

ପିପି ଭାବିଲା, ନିଶ୍ଚୟ ୟା ଭିତରେ କିଛି ରହସ୍ୟ ଥିବ । ତଥାପି ଚେଷ୍ଟା କଲେ କ୍ଷତି କଣ? ଏହା ଭାବି ସେ ପିକୁକୁ ବୋତଲଟି ଆଣିବାକୁ କହିଲା । ଦେଖିଲା, ସେଇଟା ଗୋଟେ ପ୍ଲାଷ୍ଟିକ ବୋତଲ । ପିଇବା ପାଇଁ



ପାଇପ୍‌ଟିଏ ବୋତଲ ସହିତ ଫିଟ୍ କରାଯାଇଛି । ପାଇପ୍‌କୁ ମୁହଁରେ ଲଗାଇ ପିକୁ ଶୋଷିବାକୁ ଚେଷ୍ଟା କଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ପାରିଲାନି । ଟୋପାଏ ବି ପାନୀୟ ବୋତଲ ଭିତରୁ ଟାଣି ପାରିଲାନି । ସେ ପୁଣିଥରେ ବୋତଲଟିକୁ ଦେଖିଲା, ବୋତଲର ମୁହଁକୁ ଠିପିଦ୍ୱାରା ବନ୍ଦ କରାଯାଇଛି ଏବଂ ଠିପି ଚାରିପାଖରେ ଅଠା ଦିଆଯାଇଛି । ଠିପି ମଝିରେ କଣାଟିଏ ହୋଇ ପାଇପ୍‌ଟି ପଶିଛି ଏବଂ ସେଠାରେ ମଧ୍ୟ ଅଠା ଦିଆଯାଇଛି । ଏଥିରୁ ଜଣା ଯାଉଛି ଯେ ବୋତଲଟି ପୂରାପୂରି ବାୟୁରୁଦ୍ଧ ।

ପିପି ଟିକିଏ ଚିନ୍ତା କଲା ପରେ ଜାଣି ପାରିଲା ଯେ, ଏ ଏକପ୍ରକାର ବାୟୁଚାପ ଶୂନ୍ୟତାର ଖେଳ । ବାୟୁଚାପର କେତୋଟି ବିଜ୍ଞାନ ପରୀକ୍ଷା ସଂପର୍କରେ ସେ ତା' ବୁନୁଭାଇ ପାଖରୁ ଶିଖିଥିଲା । ଏହାର ବିଭିନ୍ନ ନିୟମ ମଧ୍ୟ ଜାଣିଥିଲା । ସେ ଏଠାରେ ଦେଖିଲା ଯେ, ବୋତଲଟି ବାୟୁରୁଦ୍ଧ ଥିବା ହେତୁ ତା' ଭିତରେ ଥିବା ତରଳ ପଦାର୍ଥ ଉପରେ ଚାପ ପଡୁନି । ତେଣୁ ତା' ଭିତରୁ ପାନୀୟ ପାଇପ୍ ଦେଇ ଉପରକୁ ଟାଣି ହେଉନି ।

ପିଲାଟି ପଚାରିଲା, କ'ଣ ଭାଇ ପି' ପାରିବନି ? ତା'ହେଲେ ତୁମ ସାଙ୍ଗକୁ ଦିଅ । ସେ କାଳେ ପିଇ ପାରିବେ ।

ପିପି କହିଲା, ହଁ ମୁଁ ଥରେ ଚେଷ୍ଟା କରି ଦେଖେ । ଏହା କହି ପିକୁ ହାତରୁ ସେ ବୋତଲଟିକୁ ଆଣିଲା । ତା' ପକେଟ୍‌ରେ ଥିଲା ଗୋଟେ ସେଫ୍‌ଟିପିନ୍ । ସେଫ୍‌ଟିପିନ୍

ସାହାଯ୍ୟରେ ସେ ପ୍ଲାଷ୍ଟିକ୍ ବୋତଲ ଠିପି ତଳକୁ ଦୁଇ ଚାରିଟା କଣା କରିଦେଲା ଏବଂ ଏକା ନିଃଶ୍ୱାସରେ ପାନୀୟତକ ପି' ପକାଇଲା । ଏହା ଦେଖି ଖେଳ ଖେଳାଉଥିବା ପିଲାଟି ଆଷ୍ଟର୍ଯ୍ୟ । ଦେଖୁଥିବା ଅନ୍ୟାନ୍ୟ ପିଲାମାନେ ମଧ୍ୟ ବିସ୍ମୟରେ ଆଁ କରି ଅନାଇଥା'ନ୍ତି ।

ଏତିକିବେଳେ ଷ୍ଟଲ ଭିତରୁ ବାହାରି ଆସିଲେ ଜଣେ ଭଦ୍ରଲୋକ । ସେ ଥିଲେ ବିଜ୍ଞାନ ଶିକ୍ଷକ । ପିପିର ପିଠି ଥାପୁଡ଼ି ସେ କହିଲେ, ବାଃ..... ବଡ଼ ବୁଦ୍ଧିମାନ ପିଲା ତୁମେ । କେଉଁ ଶ୍ରେଣୀରେ ପଢୁଛ ? ପିପି କହିଲା, ପଞ୍ଚମରେ । ଆଚ୍ଛା ତୁମେ କେମିତି ଜାଣିଲ ଯେ ବୋତଲରେ କଣା କଲେ ପାଣି ପି' ହେବ ବୋଲି ? ଶିକ୍ଷକ ପଚାରିଲେ । ପିପି କହିଲା, ମୁଁ ଦେଖିଲି ବୋତଲଟି ଚାରିଆଡୁ ବାୟୁରୁଦ୍ଧ କରାଯାଇଛି । ତା' ମାନେ ତା' ଭିତରେ ବାୟୁଚାପ ପଡୁନି । ଆମ ଚାରିପାଖରେ ଯେଉଁ ବାୟୁମଣ୍ଡଳ ଅଛି, ତାର ଗୋଟେ ଚାପ ରହିଛି ଏବଂ ପ୍ରତ୍ୟେକ ବସ୍ତୁ ଉପରେ ବାୟୁର ଚାପ ପଡୁଛି । ବୋତଲ ଭିତରେ ଥିବା ପାଣି ଉପରେ ବାୟୁଚାପ ନ ପଡ଼ିଲେ ତାହା କୌଣସି ପ୍ରକାରେ ଉପରକୁ ଉଠି ପାରିବ ନାହିଁ । ଏହା ବିଜ୍ଞାନର ନିୟମ । ଆଉ ଏକ ନିୟମ ହେଲା, ବୋତଲ ଭିତରୁ ଯଦି ପାଣି ବାହାରକୁ ଆସିବ, ତେବେ ସେ ସ୍ଥାନଟି ଶୂନ୍ୟ ହେବ ଏବଂ ସେହି ଶୂନ୍ୟସ୍ଥାନ ପୂରଣ କରିବା ପାଇଁ ବାହାରର ବାୟୁ ବୋତଲ ଭିତରେ ପଶିବା ଆବଶ୍ୟକ । ହେଲେ ବୋତଲ ତ' ଚାରିଆଡୁ ନିବୁଜ, ତା' ଭିତରକୁ ବାୟୁ ପଶିବ କେମିତି ? କିନ୍ତୁ ଉପହାର ପାଇବାକୁ ହେଲେ, ଯେକୌଣସି ପ୍ରକାରେ ତ ପାନୀୟତକ ପିଇବାକୁ ପଡ଼ିବ । ତେଣୁ ମୁଁ ବୋତଲରେ କଣା କରିଦେଲି । କଣା ହେବା ସଂଗେ ସଂଗେ ବାହାର ବାୟୁର ଚାପ ବୋତଲ ଭିତରେ ପଡ଼ିଲା ଏବଂ ପାନୀୟତକ ସହଜରେ ପିଇ ହେଲା । କ'ଣ ମୁଁ କିଛି ଭୁଲ କଲି ସାର୍....?

ସାର୍ ପୁଣିଥରେ ସାବାସି ଦେଇ କହିଲେ, ନା' କିଛି ଭୁଲ କରିନ । ଏ ଖେଳରେ କୌଣସି ପିଲା ଆଜି ପର୍ଯ୍ୟନ୍ତ ଏତିକି କରି ଦେଖାଇ ପାରିନି । ତେଣୁ ତୁମେ କେବଳ ବୁଦ୍ଧିମାନ ନୁହଁ ସାହସୀ ମଧ୍ୟ । ନିଅ ତୁମ ଉପହାର । ଏହା କହି ସେ ପିପିକୁ ଖଣ୍ଡେ ବହି ବଢ଼ାଇ ଦେଲେ । ସେଇଟା ଥିଲା ଖଣ୍ଡେ ଦାମିକା ବିଜ୍ଞାନ ବହି । ପ୍ରଖ୍ୟାତ ବିଜ୍ଞାନ ଲେଖକ ଡ. ଗୋକୁଳାନନ୍ଦ ମହାପାତ୍ରଙ୍କ ଲିଖିତ 'ମୃତ୍ୟୁରଶ୍ମି' ! ଦୁଇସାଙ୍ଗ ଖୁସିରେ ବହିଟି ଧରି ଘରକୁ ଫେରିଲେ ।



# ଭାନୁର ଭବିଷ୍ୟବାଣୀ

ଭାନୁ ଆଉ ଗୁଗୁଲୀ ଏକା ସ୍କୁଲରେ ପଢ଼ନ୍ତି । ଗୁଗୁଲୀ ସାନ । ସେ ଭାନୁର ତଳ ଶ୍ରେଣୀରେ ପଢ଼େ । ଏକା ମା' ପେଟର ଭଉଣୀ ନ'ହେଲେ ମଧ୍ୟ ଭାନୁ ଗୁଗୁଲୀକୁ ନିଜ ସାନ ଭଉଣୀ ପରି ସ୍ନେହ କରେ । ଗୁଗୁଲୀ ଆର ସାହିର ତା' ମଧୁକାକାଙ୍କ ଝିଅ । ପ୍ରତିଦିନ ଦୁହେଁ ସାଙ୍ଗ ହୋଇ ସ୍କୁଲକୁ ଯାଆନ୍ତି । ଭାନୁ ଭାରି ହୁସିଆର୍ ଝିଅ । ପାଠପଢ଼ାରେ ମଧ୍ୟ ଆଗୁଆ । ବିଜ୍ଞାନ ପାଠ ତାର ସବୁଠୁ ପ୍ରିୟ ବିଷୟ ।

ଥରେ ବର୍ଷାଦିନେ ଭାନୁ ସ୍କୁଲକୁ ବାହାରିଲା । ବ୍ୟାଗରେ ଖାତାପତ୍ର ଆଦି ସଜାଡ଼ି ରଖିବା ପରେ ତା' ଟିକି ଫୋଲଡ଼ିଙ୍ଗ ଛତାଟି ମଧ୍ୟ ପୂରାଇଲା । ଢୋଡା ମୋଜା ପିନ୍ଧି ଗୁଗୁଲୀକୁ ଅପେକ୍ଷା କଲା । ଗୁଗୁଲୀ ମଧ୍ୟ ଠିକ୍ ସମୟରେ ଆସି ପହଞ୍ଚିଗଲା । ଭାନୁ ପଚାରିଲା, "ଗୁଗୁଲୀ ଛତା ଆଣିଛୁଟି ?" ଗୁଗୁଲୀ କହିଲା, "ହଁ ଅପା, ବାପା କହନ୍ତି ବର୍ଷା ହେଉ କି ନ'ହେଉ ବର୍ଷାଦିନେ ସବୁବେଳେ ପାଖରେ ଛତା ଥିବା ଦରକାର । ସେଥିପାଇଁ ମୁଁ ଛତା ଆଣେ ।"

ଭାନୁ କହିଲା, "ଆଉ ଅଳ୍ପ ସମୟ ଭିତରେ ବର୍ଷା ହେବ ତ, ସେଥିପାଇଁ ମୁଁ ପଚାରୁଥିଲି ।" ଗୁଗୁଲୀ ଆଶ୍ଚର୍ଯ୍ୟରେ କହିଲା, "କାଇଁ ସେମିତି କିଛିତ ଜଣା ପଡୁନି । ବର୍ଷା ହେବ ବୋଲି ତମେ କେମିତି ଜାଣିଲ ଯେ ?"

ଭାନୁ ମଜ୍ଜା କରିବା ପାଇଁ କହିଲା, "ମୁଁ ସାଧନା ବଳରେ ଭବିଷ୍ୟ କଥା ଜାଣିପାରେ.... ବୁଝିଲୁ ?"

ଗୁଗୁଲୀ କହିଲା, "ନା' ମ' ଅପା । ତମେ ଟି.ଭି. ସମ୍ବାଦ ଶୁଣିଥିବ ।"

"ଆଲୋ କାଲି ରାତିରୁ ପରା ଲାଇନ୍ କଟିଯାଇଛି ଯେ ଟିଭି ଦେଖା ବନ୍ଦ, ମୁଁ ସମ୍ବାଦ କେମିତି ଶୁଣିବି ?" ଭାନୁ କହିଲା ।

''ତା'ହେଲେ ବର୍ଷା ହେବ ବୋଲି ତମେ କେମିତି ଜାଣିଲ କହନା ଅପା ।'' ଗୁଗୁଲୀ ଅଳି କଲାପରି ପଚାରିଲା ।

ଶେଷରେ ଭାନୁ କହିଲା, ''ଜାଣିଚୁ ଗୁଗୁଲୀ, ପାଣିପାଗ କହିପାରୁଥିବା ଗୋଟେ ଯନ୍ତ୍ର ମୁଁ ତିଆରି କରିଛି । ଦେଖିବୁ... ? ଆସ୍ ।'' ଏହା କହି ଭାନୁ ଗୁଗୁଲୀକୁ ତା' ପଢ଼ା କୋଠରି ଭିତରକୁ ଡାକି ନେଲା । କାନ୍ଥରେ ଟଙ୍ଗା ହୋଇଥିବା ଗୋଟେ ବିଚିତ୍ର ଖେଳନା ଆଡ଼କୁ ଦେଖାଇ କହିଲା, ଏ ହେଉଛି ଗୋଟେ ସରଳ ବାରୋମିଟର ବା ବାୟୁ ଚାପମାନ ଯନ୍ତ୍ର ।''

ଗୁଗୁଲୀ ଦେଖିଲା, କାନ୍ଥରେ ଗୋଟେ ଚଉଡ଼ା କାଗଜ ପଟି ଚପା ଯାଇଛି । କାଗଜର ଉପର ଭାଗରେ ମେଘର ଚିତ୍ର ଏବଂ ତଳ ଭାଗରେ ସୂର୍ଯ୍ୟ ଚିତ୍ର ଅଙ୍କା ଯାଇଛି । କାଗଜ ପଟିର ବାଁ ପଟକୁ, ଠିକ୍ ମଝାମଝି, କାନ୍ଥରେ ଟଙ୍ଗା ଯାଇଛି ଗୋଟେ ଛୋଟ ଟିଣ ଡବା । ଡବା ମୁହଁକୁ ଗୋଟେ ପତଳା ବେଲୁନ୍ ରବର ଦ୍ୱାରା ଢାଙ୍କି ମଜଭୁତ୍ ଭାବେ ବନ୍ଧା ଯାଇଛି । ତା' ଉପରୁ ସରୁ ତାରଟିଏ ବାହାରି ଗୋଟେ ତୀର-ପାତିଆର ଲାଞ୍ଜ ସହିତ ଯୋଡା ଯାଇଛି ଏବଂ ତୀରର ମୁନଟି 'ମେଘ' ଆଡ଼କୁ ଅଳ୍ପ ଉଠି କରି ରହିଛି ।

ଗୁଗୁଲୀ କିଛି ବୁଝି ନପାରି ଭକୁଆଙ୍କ ପରି ଯନ୍ତ୍ରଟିକୁ ଅନାଇ ରହିଲା । ଭାନୁ ପଚାରିଲା, ''କ'ଣ କିଛି ବୁଝିପାରୁନୁ ? ଠିକ୍ ଅଛି, ଏବେତ' ସ୍କୁଲ ସମୟ ହୋଇଗଲାଣି । ସ୍କୁଲରୁ ଫେରିଲେ ମୁଁ ତୋତେ ମୋର ଏ ବାୟୁଚାପ ଯନ୍ତ୍ର ବିଷୟରେ ଟିକିନିଖି ବୁଝାଇ ଦେବି ।''

ତା'ପରେ ଦୁହେଁ ସ୍କୁଲମୁହାଁ ଚାଲିଲେ । ସ୍କୁଲରେ ପହଞ୍ଚୁ ପହଞ୍ଚୁ ବର୍ଷା ଆରମ୍ଭ ହୋଇଗଲା । ଭାନୁ କହିଲା, ''ଦେଖିଲୁ ତ ମୋ ଯନ୍ତ୍ରର ଭବିଷ୍ୟ ବାଣୀ କେମିତି ସତ ହେଲା?'' ଗୁଗୁଲୀକୁ ସତରେ ବଡ଼ ଆଶ୍ଚର୍ଯ୍ୟ ଲାଗୁଥିଲା । ଯନ୍ତ୍ରଟା ବିଷୟରେ ଜାଣିବା ପାଇଁ ତା' କୌତୂହଳ ଆହୁରି ବଢ଼ିବାକୁ ଲାଗିଲା । ସେଦିନ ଶ୍ରେଣୀରେ ଯାହା ପଢ଼ା ହେଲା, ତେଣିକି ତା'ର ଆଉ ଧ୍ୟାନ ନଥାଏ । ସେ କେବଳ ଭାନୁଅପାର ବାୟୁ ଚାପମାନ ଯନ୍ତ୍ରଟା ବିଷୟରେ ହିଁ ଭାବୁଥାଏ ।

ସ୍କୁଲ ଛୁଟି ହେଲା । ସେତେବେଳକୁ ପାଗ ପୂରା ଶୁଖିଲା । ପଶ୍ଚିମ ଆକାଶରେ ଅସ୍ତ ହେଉଥିବା ସୂର୍ଯ୍ୟଙ୍କ ସୁନେଲି କିରଣ ଚାରିଆଡ଼େ ବିଛେଇ ହୋଇ ପଡ଼ିଥାଏ । ବାଟସାରା ଗୁଗୁଲୀ ଭାନୁକୁ କେବଳ ପାଣିପାଗ ଏବଂ ସେ ଯନ୍ତ୍ରଟି ବିଷୟରେ ପଚାରୁଥାଏ । ଘରେ ପହଞ୍ଚି ସେ ସିଧା ଚାଲିଲା ଭାନୁର ପଢ଼ା କୋଠରିକୁ । ଦେଖିଲା ଯନ୍ତ୍ରର ତୀର ଚିହ୍ନଟା ଆଉ ମେଘ ଆଡ଼କୁ ଉଠି ରହିନାହିଁ ବରଂ ସୂର୍ଯ୍ୟ ଆଡ଼କୁ ଅନ୍ଧ ଝୁଙ୍କି କରି ରହିଛି ।

ଗୁଗୁଲୀର କୌତୂହଳ ଦେଖି ଭାନୁ ଟେବୁଲ ଉପରେ ଚଢ଼ି ଆସ୍ତେ କରି ଟିଣ ଡବାଟିକୁ ତଳକୁ ଓହ୍ଲାଇ ଆଣିଲା । ତା'ପରେ ସେ ତାକୁ ବୁଝାଇଲା, "ଦେଖ୍ ଗୁଗୁଲୀ, ଏ ଯନ୍ତ୍ରଟିକୁ ଜାଣିବା ପୂର୍ବରୁ ବାୟୁର ଚାପ ବିଷୟରେ ତୋତେ କିଛିଟା ଜାଣିବାକୁ ପଡ଼ିବ । ତୁ ଜାଣିଚୁ ଆମ ଚାରିପାଖରେ ବାୟୁ ପୂରି ରହିଛି । ପ୍ରତ୍ୟେକ ବସ୍ତୁ ଉପରେ ସବୁ ସମୟରେ ବାୟୁର ଚାପ ପଡୁଥାଏ । କିନ୍ତୁ ତାହା ସବୁବେଳେ ସମାନ ନଥାଏ । ବିଶେଷଂ କରି ବର୍ଷା ଋତୁରେ ବାୟୁଚାପରେ ବାରମ୍ବାର ପରିବର୍ତ୍ତନ ଆସେ । ଆମେ ଜାଣିଛେ, ବର୍ଷାଦିନେ ବାୟୁମଣ୍ଡଳରେ ପ୍ରଚୁର ପରିମାଣରେ ଜଳୀୟ ବାଷ୍ପ ଉଡ଼ି ବୁଲୁଥାଏ । ବାୟୁ ତୁଳନାରେ ଜଳୀୟ ବାଷ୍ପ ହାଲୁକା । ଯେକୌଣସି ହାଲୁକା ବସ୍ତୁର ଓଜନ ମଧ୍ୟ କମ୍ । ତେଣୁ ବାୟୁ ଅପେକ୍ଷା ଜଳୀୟ ବାଷ୍ପର ଚାପ କମ୍ । ବର୍ଷା ପୂର୍ବରୁ ବାୟୁ ମଣ୍ଡଳରେ ଜଳୀୟ ବାଷ୍ପର ପରିମାଣ ଅଧିକ ଥାଏ । ତା' ମାନେ ବାୟୁ ମଣ୍ଡଳର ଚାପ କମ୍ ଥାଏ । ଝଡ଼ ବର୍ଷାର ସମ୍ଭାବନା ଥିଲେ ଚାପ ଆହୁରି କମିଯାଏ ।

ଏବେ ଆମେ ଏ ଯନ୍ତ୍ର ବିଷୟକୁ ଆସିବା । ଏଇଟା ଗୋଟେ ସାଧାରଣ ଡବା । ଭିତରେ କିଛି ନାହିଁ । ତା' ମାନେ ନିଶ୍ଚୟ ବାୟୁ ଅଛି । ଡବା ମୁହଁରେ ବନ୍ଧା ଯାଇଛି ରବର ବେଲୁନ୍‌ର ଗୋଟେ ପତଳା ପରଦା । ପରଦାଟିକୁ ଖୁବ୍ ମଜଭୁତ ଭାବେ ରବର ବେଣ୍ଡ ଏବଂ ଅଠା ଦେଇ ବନ୍ଧାଯାଇଛି । ତା' ମାନେ ଡବା ଭିତରେ ଥିବା ବାୟୁ ଏବଂ ବାହାର ବାୟୁ ମଧ୍ୟରେ କୌଣସି ସଂପର୍କ ନାହିଁ ବୋଲି ବୁଝିବାକୁ ହେବ । ପରଦା ଉପରେ, ଠିକ୍ ମଝାମଝି ମୁଁ ଏ ତାର ଖଣ୍ଡକୁ ଅଠା ଦେଇ ଲଗାଇ ଦେଇଛି । ତାରଟି ଡବା ଫାନ୍ଦ ଉପରେ ଦେଇ ଅଳ୍ପ ପଦାକୁ ବାହାରିଛି ଏବଂ ତା' ମୁହଁଟା ଇଂରାଜୀ ଅକ୍ଷର 'L'

ପରି ବଙ୍କା ହୋଇଛି । ତାରର ଏ ବଙ୍କା ଅଂଶଟି କାଛରେ ଲାଗିଥିବା ତୀର ପାତିଆ ଲାଞ୍ଜରେ ଥିବା କଣା ଭିତରେ ପଶୁଛି ଏବଂ ତୀରକୁ ତଳ ଉପର କରୁଛି । ତୀର ପାତିଆଟିକୁ ମୁଁ ଏପରି ଏକା ଜାଗାରେ କବଜା କରି ଝୁଲାଇଛି ଯେ, ସେ ଗୋଟିଏ ଭାରଦଣ୍ଡ ପରି କାମ କରୁଛି । ତୀରର ଲାଞ୍ଜକୁ ଯଦି ଗୋଟେ ମିଲିମିଟର ତଳକୁ ଦବାଇ ଦିଆଯିବ, ତା'ହେଲେ ତା' ମୁନଟି ଗୋଟେ ସେ.ମି. ଉପରକୁ ଉଠିବ । ୟା କାମ ଠିକ୍ ଢେଙ୍କି ପରି ଏବଂ ୟାକୁ ତଳ ଉପର କରୁଛି ଡବାରେ ଲାଗିଥିବା ଏଇ ବଙ୍କା ତାରଟି ।

ଗୁଗୁଲୀ ପ୍ରଶ୍ନ କଲା, "ହେଲେ ଡବା ପରଦାରେ ଲାଗିଥିବା ବଙ୍କା ତାରଟା ନିଜେ ତଳ ଉପର ହେଲେ ସିନା ତୀରକୁ ହଲାଇବ, ସେ କେମିତି ତଳ ଉପର ହେଉଛି?"

"ହଁ, ଠିକ୍ କଥାଟା ଧରିଛୁ ।" ଭାନୁ କହିଲା, "ଡବାର ଫନ୍ଦ ବାହାରେ ଥିବା ବଙ୍କା ତାରଟି ଉପରକୁ ଉଠିବାକୁ ହେଲେ ରବର ପରଦାରେ ଲାଗିଥିବା ଅଂଶଟି





ବା ରବର ପରଦାଟି ତଳକୁ ଦବିବାକୁ ହେବ । ଏଇ ଦେଖ୍, ଏହା କହି ସେ ଡବା ମୁହଁରେ ବନ୍ଧା ହୋଇଥିବା ରବର ପରଦା ଉପରେ ଆସ୍ତେ କରି ଆଙ୍ଗୁଠି ଚାପ ଦେଲା । ତାରର ବଙ୍କା ଅଂଶଟା ଅଳ୍ପ ଉପରକୁ ଉଠିଲା । ଆଙ୍ଗୁଠି ଉଠାଇ ଦେବା ପରେ ତାର ପୁଣି ପୂର୍ବ ଅବସ୍ଥାକୁ ଚାଲି ଆସିଲା ।''

ଭାନୁ ବୁଝାଇଲା, ବର୍ଷା, କୋହଲା ପାଗ କିମ୍ବା ଝଡ଼ି ସମୟକୁ ବାଦ୍ ଦେଲେ ଅନ୍ୟ ସମୟରେ କିମ୍ବା ଶୁଖିଲା, ଖରା ପାଗରେ ବାୟୁ ମଣ୍ଡଳର ଚାପ ଅଧିକ ଥାଏ । ଡବା ଭିତରର ବାୟୁ ଚାପ ଅପେକ୍ଷା ବାହାରର ଚାପ ଅଧିକ ହେଲେ ପରଦା ଉପରେ ତା' ଓଜନ ପଡେ ଏବଂ ପରଦା ଦବିବାକୁ ଲାଗେ । ପରଦା ଦବିଲେ ତାରର ଗୋଟିଏ ଅଂଶ ତଳକୁ ଦବେ ଏବଂ ବଙ୍କା ଅଂଶଟି ଉପରକୁ ଉଠେ । ତାଦ୍ୱାରା ତାର ସହିତ ସଂଯୁକ୍ତ ହୋଇଥିବା ତୀରର ମୁନିଆ ପାଖଟି ତଳ ମୁହାଁ ହୋଇଯାଏ । ଠିକ୍ ସେମିତି ବର୍ଷା ପୂର୍ବରୁ ବାୟୁମଣ୍ଡଳରେ ଯେତେବେଳେ ଜଳୀୟବାଷ୍ପ ଭରିଯାଏ ବାୟୁର ଚାପ କମିବାକୁ ଲାଗେ । ଡବା ଭିତରେ ଥିବା ବାୟୁଚାପ ଅପେକ୍ଷା ବାହାରର ଚାପ କମ୍ ହେଲେ ଭିତରର ଚାପ ପରଦାକୁ ଅଳ୍ପ ଉପରକୁ ଠେଲି ରଖେ । ସେତିକିବେଳେ ତାରର ବଙ୍କା ଅଂଶଟି ତଳକୁ ଦବିଯାଏ ଏବଂ ତୀରକୁ ଉପରକୁ ଉଠାଏ । ତୀର ଉପରକୁ ଉଠିଲେ ମେଘ ଆଡକୁ ଦେଖାଏ ।

ଗୁଗୁଲୀ ଟିକିଏ ଚିନ୍ତା କରି କହିଲା, ''ବୁଝିଲି, ତା' ମାନେ ବାୟୁମଣ୍ଡଳରେ ଜଳୀୟ ବାଷ୍ପ ଅଧିକ ଥିବା ସମୟରେ ବାୟୁଚାପ କମ୍ ହେତୁ ପରଦା ଉପରକୁ ଉଠେ ଏବଂ ତୀରଟି 'ମେଘ' ଆଡ଼କୁ ଉଠିଯାଏ । ଶୁଖିଲା ଓ ଖରାପାଗରେ ବାୟୁ ଚାପ ଅଧିକ ହେତୁ ପରଦା ତଳକୁ ଦବେ ଏବଂ ତୀର 'ସୂର୍ଯ୍ୟ' ଆଡ଼କୁ ନଇଁଯାଏ । ଅପା, ଏ'ତ ବଡ଼ ବଢ଼ିଆ ଖେଳ । ମୁଁ ଭାବୁଛି ଏପରି ଗୋଟେ ସୁନ୍ଦର ଓ ସରଳ ବାୟୁ ଚାପମାନ ଯନ୍ତ୍ର ମୁଁ ନିଜେ ମଧ୍ୟ କରି ପାରିବି ।''



# ବଳୁଆ କିଏ ?

ସେଦିନ ଥିଲା ରବିବାର । ସ୍କୁଲ ଛୁଟି । କୁନା, ମୁନା ଓ ଟୁନା ତିନି ସାଙ୍ଗ 'ଜେଜେ ମୋସାଏ'ଙ୍କ ଘର ଆଡ଼େ ବୁଲି ବାହାରିଲେ । ଜେଜେ ମୋସାଏଙ୍କ ଭଲ ନାଆଁ ଉତ୍ତମ ହାଲଦାର । ପଶ୍ଚିମ ବଙ୍ଗଳାର ଲୋକ । ସେ ତାଙ୍କ ଜେଜେ ପଣିଜେଜେଙ୍କ ଅମଳରୁ ଓଡ଼ିଶାରେ ରହି ଆସିଛନ୍ତି । ପାଖ ଗାଁ ହାଇସ୍କୁଲରେ ବିଜ୍ଞାନ ଶିକ୍ଷକ ଥିଲେ । ଏବେ ସେ ଅବସର ନେଲେଣି । ସହକର୍ମୀ ଶିକ୍ଷକମାନେ ତାଙ୍କୁ 'ଦାଦା ମୋସାଏ' ଡାକୁଥିଲେ । ଅବସର ନେବା ପରେ ପିଲାମାନେ ଧୀରେ ଧୀରେ 'ଜେଜେ ମୋସାଏ' ଡାକିବା ଆରମ୍ଭ କରିଦେଲେ ।

ଜେଜେ ମୋସାଏ ପିଲାମାନଙ୍କୁ ଖୁବ୍ ଭଲ ପାଆନ୍ତି । ପିଲାଙ୍କୁ ପାଖରେ ବସାଇ ବିଜ୍ଞାନ ସଂପର୍କରେ ନୂଆ ନୂଆ କଥା କହନ୍ତି । ମଜା ମଜା ଖେଳ ଦେଖାନ୍ତି । ଛୁଟିଦିନମାନଙ୍କରେ ତାଙ୍କ ଘରେ ପିଲାଙ୍କ ଭିଡ଼ ଜମିଯାଏ ।

ସେଦିନ ଟୁନା, ମୁନା, କୁନା ପହଞ୍ଚିବା ବେଳକୁ 'ଜେଜେ ମୋସାଏ' ଯାଇଥାନ୍ତି ବଜାର । ତିନିସାଙ୍ଗ ତାଙ୍କ ଅପେକ୍ଷାରେ ବସିଲେ । ବାରଣ୍ଡା ଉପରେ ବସି ଗପସପ ଆରମ୍ଭ କରିଦେଲେ । ବାରଣ୍ଡା ତଳେ ପଡ଼ିଥିଲା ଗୋଟେ ପଥର ପେଷଣା ଚକି । ତିନିହେଁ ଠିକ୍ କଲେ ଯେ ନିଜ ନିଜ ବଳ କଷିବେ । ପଥର ଚକିଟିକୁ ଉଠାଇ କିଏ କେତେଦୂର ନେଇ ପାରିବ ଦେଖାଯାଉ । ଯିଏ ଅଧିକା ବାଟ ନେବ ତାକୁ ସବୁଠୁ ବଳୁଆ ଧରାଯିବ ।

ପ୍ରତିଯୋଗିତା ଆରମ୍ଭ ହୋଇଗଲା । ପ୍ରଥମେ ଟୁନା ଉଠାଇଲା । ସେ ପେଟ ପର୍ଯ୍ୟନ୍ତ ଚକିଟାକୁ ଉଠାଇ ଦେଲା; କିନ୍ତୁ ବେଶି ବାଟ ଯାଇ ପାରିଲା ନାହିଁ । ମୁନା ତଳୁ ଚାଖଣ୍ଡେ ମାତ୍ର ଉଠାଇ, ନଇଁ ନଇଁକା ବେଶ୍ କିଛି ଦୂର ବୋହିନେଲା । ଶେଷରେ କୁନା ଆଉ ଟିକିଏ ଅଧିକ ଉଚ୍ଚକୁ ଉଠାଇଲା । ମାତ୍ର ଚାରି ପାହୁଣ୍ଡ ଯାଇ ପକାଇ ଦେଲା । ତା'ପରେ ସେମାନଙ୍କ ମଧ୍ୟରେ ଆରମ୍ଭ ହୋଇଗଲା ବାଦବିବାଦ । ସଭିଏଁ ନିଜ ନିଜକୁ ବଳୁଆ ବୋଲି ଦାବି କରିବାକୁ ଲାଗିଲେ ।

ଏତିକିବେଳେ ପହଞ୍ଚି ଗଲେ ଜେଜେ ମୋସାଏ । ସେ ଘଟଣାଟା ପିଲାଙ୍କ ପାଖରୁ ଶୁଣିବା ପରେ କହିଲେ, ''ଆରେ ପିଲେ..... ମୁଁ ଯାହା ଜାଣିଲିଣି ତୁମେ ତିନିହେଁ ଏକକୁ ଆରେକ ବଳୁଆ । ହେଲେ ମଗଜରେ ଯଦି ବୁଦ୍ଧିର ବଳ ନଥିବ ଏ ବାହୁବଳ କେଉଁ କାମକୁ କହିଲ ? ତୁମେ ତିନିହେଁ ଆଜି ଆସିବ ବୋଲି ମୁଁ ଜାଣିଥିଲି । ତୁମମାନଙ୍କ ପାଇଁ ମୁଁ ଗୋଟେ ଯନ୍ତ୍ର ତିଆରି କରି ଆଣୁଛି ରୁହ । ସେଥିରୁ ଜାଣି ପାରିବା, ତୁମ ଭିତରୁ ପ୍ରକୃତ ବଳୁଆ କିଏ?''



ଏହା କହି ଜେଜେ ମୋସାଏ ଭିତରକୁ ଗଲେ । ଗୋଟେ ପ୍ଲାଷ୍ଟିକ ବୋତଲ ଧରି ଆସିଲେ । ବୋତଲ ମୁହଁରେ ଗୋଟେ ବେଲୁନ୍ ବନ୍ଧା ହୋଇଥିଲା ଏବଂ ବେଲୁନ୍‌ଟା ବୋତଲ ଭିତରେ ଝୁଲି ରହିଥିଲା ।

ଜେଜେ ମୋସାଏ କହିଲେ, ବୋତଲ ଭିତରେ ଥିବା ଏ ବେଲୁନ୍‌ଟିକୁ ପାଟିରେ ଫୁଙ୍କି ଯିଏ ଫୁଲାଇ ଦେଇ ପାରିବ ସେ ହିଁ ପ୍ରକୃତ ବଳୁଆ । ବୋତଲଟିକୁ ମୁଁ ପଛପାଖରୁ ଧରୁଛି । ତୁମେ ଜଣ ଜଣ କରି ଆସ ଏବଂ ବେଲୁନ୍‌ଟିକୁ ଫୁଙ୍କ ।

ପ୍ରଥମେ କୁନା ଫୁଙ୍କିବା ଆରମ୍ଭ କଲା । ବହୁତ ଚେଷ୍ଟା କଲା, ପାରିଲାନି ।

ତା'ପରେ ଟୁନାର ପାଳି ପଡ଼ିଲା । ସେ ବି ପାରିଲାନି । ଶେଷରେ ମୁନା ଆସି ପାରୁପର୍ଯ୍ୟନ୍ତ ଚେଷ୍ଟା କଲା । ଯେତେବେଳେ ଫୁଙ୍କି ଫୁଙ୍କି ତା' ଝାଳ ନିଗିଡ଼ି ପଡ଼ିଲା, ସେ ଯାଇ ପିଣ୍ଡା ଉପରେ ବସି ପଡ଼ିଲା । ତିନିହେଁ ବିସ୍ମୟରେ ପରସ୍ପରକୁ ଚାହିଁଲେ । ଭାବିଲେ, ଏ ଗୋଟେ ଛୋଟିଆ କାମ କେମିତି ସେମାନେ କରି ପାରିଲେନି ?

ଜେଜେ ମୋସାଏ କହିଲେ, ''ଦେଖିଲ, ବାହୁବଳ ଯେତେ ଥିଲେ କଣ ହେବ, ବୁଦ୍ଧିବଳ ନଥିବା ହେତୁ ତୁମେମାନେ ସାଧାରଣ ବେଲୁନ୍‌ଟାକୁ ମଧ୍ୟ ଫୁଙ୍କି ପାରିଲ ନାହିଁ । ଏବେ ମୋତେ ଦେଖ, ମୁଁ ଜଣେ ବୁଢ଼ାଲୋକ । ମୋ ଦେହରେ ବଳ ନାହିଁ । ମୁଁ ଫୁଙ୍କି ପାରୁଛି କି ନାହିଁ ଦେଖ ।'' ଏହା କହି ସେ ବୋତଲକୁ ମୁହଁରେ ଲଗାଇ ଫୁଙ୍କିବାକୁ ଲାଗିଲେ । ଆଶ୍ଚର୍ଯ୍ୟର କଥା ବେଲୁନ୍‌ଟା ବୋତଲ ଭିତରେ ଧୀରେ ଧୀରେ ଫୁଲିବାକୁ ଲାଗିଲା । ତିନି ସାଙ୍ଗ ଏହା ଦେଖି ପୁରା ଅବାକ୍ । ମୁନା ପଚାରିଲା, ''ଜେଜେ ମୋସାଏ, ଏହା କେମିତି ସମ୍ଭବ ହେଲା, ଆମେ ବୁଝି ପାରୁନୁ ?''

ଜେଜେ ମୋସାଏ ହସି ହସି ଉତ୍ତର ଦେଲେ, ''ବୁଝି ପାରିବ, ଟିକିଏ ବୈଜ୍ଞାନିକ ଦୃଷ୍ଟିକୋଣରୁ ଚିନ୍ତା କଲେ ନିଶ୍ଚୟ ବୁଝିପାରିବ । ପ୍ରଥମେ କହିଲ, ବୋତଲ ଭିତରେ ତ' ବେଲୁନ୍‌ଟା ପଶିଛି, ତା' ଭିତରେ ଆଉ କ'ଣ ଅଛି ?'' ଟୁନା କହିଲା, ''ଆଉ ତ ତା' ଭିତରେ କିଛି ନାହିଁ ।'' ମୁନା ସଂଗେ ସଂଗେ କଥାକାଟି କହିଲା, ''ହଁ ଜେଜେ ଅଛି, ତା' ଭିତରେ ବାୟୁ ମଧ୍ୟ ଅଛି ।''

ଜେଜେ ମୋସାଏ କହିଲେ, ''ମୁନା ଠିକ୍ କହିଛି । ଖାଲି ବୋତଲ ଭିତରେ ବାୟୁ ଅଛି । ତା' ଭିତରେ ବେଲୁନ୍‌ଟିକୁ ପୂରାଇ ମୁହଁକୁ ଶକ୍ତ ଭାବରେ ବାନ୍ଧି ଦିଆଯାଇଛି । ତା' ମାନେ ବାହାର ବାୟୁ ଏବଂ ବୋତଲ ଭିତରେ ଥିବା ବାୟୁ ମଧ୍ୟରେ କୌଣସି ସଂପର୍କ ନାହିଁ । ଏବେ ଆମେ ଯଦି ଫୁଙ୍କିବା ବେଲୁନ୍‌ଟି ଧୀରେ ଧୀରେ ଫୁଲିବା କଥା । ବେଲୁନ୍ ବଡ଼ ହେଲେ ସେ ବୋତଲ ଭିତରେ ଅଧିକରୁ ଅଧିକ ଜାଗା ଦଖଲ କରିବ । ତା' ମାନେ ବୋତଲର ଯେଉଁ ସ୍ଥାନରେ ବାୟୁ ଅଛି, ସେ ସ୍ଥାନ ବେଲୁନ୍ ଦଖଲ କରିବ । ଆମେ ଜାଣିଛେ, ଗୋଟିଏ ସ୍ଥାନରେ ଏକାବେଳେକେ ଦୁଇଟି ବସ୍ତୁ ରହି ପାରିବ ନାହିଁ । ତା' ମାନେ ବୋତଲ ଭିତରେ ଥିବା ବାୟୁ ଯଦି ବାହାରକୁ ଆସିବ, ତା'ହେଲେ ବେଲୁନ୍‌ଟିକୁ ଆମେ ଫୁଲାଇ ଦେଇ ପାରିବା । ହେଲେ ବୋତଲ ଭିତରୁ ବାୟୁ ବାହାରକୁ ଯିବା ପାଇଁ ବାଟ ଅଛି କି ? ମୁହଁରେ ତ ଆମେ ବେଲୁନ୍‌ଟିକୁ କଷି କରି ବାନ୍ଧି ଦେଇଛେ । ବୋତଲର

ବାୟୁ ନା ବାହାରକୁ ଆସି ପାରିବ, ନା' ଆମେ ବେଲୁନ୍‌କୁ ଫୁଙ୍କି ଫୁଲାଇ ପାରିବା। କ'ଣ ପିଲେ ବୁଝି ପାରିଲଟି ?"

ତିନିସାଙ୍ଗ ପରସ୍ପରକୁ ଚାହିଁ କଥା ହେଲେ, "ଆରେ ହଁ...., ଏ ତ' ଗୋଟେ ବିଜ୍ଞାନ ଖେଳ।" ଟୁନା ପଚାରିଲା, ଆଚ୍ଛା ଜେଜେ ମୋସାଏ, ଆପଣ ଫୁଙ୍କିବାରୁ ପୁଣି ବେଲୁନ୍ କେମିତି ଫୁଲିଲା ?" ଜେଜେ ମୋସାଏ କହିଲେ, ସେଇଟା ମୋ ହାତସଫେଇର ଖେଳ। କେମିତି ହେଲା ଏବେବି ବୁଝି ପାରୁନ ?

ଏତିକିରେ ମୁନା ସଂଗେ ସଂଗେ କହିଲା, ବୁଝିଗଲି ଜେଜେ, ଆପଣ ପ୍ଲାଷ୍ଟିକ୍ ବୋତଲରେ ନିଷ୍ଚୟ କେଉଁଠି ଗୋଟେ କଣା କରିଛନ୍ତି। ଆମକୁ ଫୁଙ୍କିବା ପାଇଁ ଯେତେବେଳେ କହିଲେ ସେତେବେଳେ ଆପଣ ବୋତଲଟିକୁ ପଛ ପାଖରୁ ଭିଡ଼ି ଧରିଥିଲେ। ତା' ମାନେ ସେ କଣାରେ ଆଙ୍ଗୁଠି ଦେଇ ଆପଣ ବନ୍ଦ କରି ଦେଇଥିଲେ। ତା'ଦ୍ୱାରା ବୋତଲର ବାୟୁ ପଦାକୁ ଯାଇ ପାରିଲା ନାହିଁ କି ବେଲୁନ୍ ଫୁଲିଲା ନାହିଁ। କିନ୍ତୁ ନିଜେ ଯେତେବେଳେ ଫୁଙ୍କିଲେ, କଣାରୁ ଆଙ୍ଗୁଠି ହଟାଇ ଦେଇଥିବେ। ତା'ଦ୍ୱାରା ବୋତଲ ଭିତର ବାୟୁ ବାହାରକୁ ଚାଲିଗଲା ଏବଂ ବେଲୁନ୍‌ଟିକୁ ବଡ଼ ହେବା ପାଇଁ ସୁଯୋଗ ମିଳିଲା। ମୁଁ ଠିକ୍ କହିଲି ନା' ଜେଜେ ମୋସାଏ ?"

ଜେଜେ ମୋସାଏ କହିଲେ, "ତୁମ ତିନିଙ୍କ ଭିତରୁ ମୁନାଟା ବୁଦ୍ଧି ବଳରେ ଆଗୁଆ। ସେ ଠିକ୍ କହିଛି, ଏଇ କଣାଟି ଦେଖ।" ଏହା କହି ସେ ବୋତଲରେ ଥିବା କଣାଟିକୁ ପିଲାମାନଙ୍କୁ ଦେଖାଇ ଦେଲେ। ପୁଣି କହିଲେ, ପିଲାମାନେ, ଆମେ ଏ କଣାଥିବା ବୋତଲକୁ ନେଇ ଆଉ ଗୋଟେ କଉତୁକିଆ ଖେଳ ଖେଳି ପାରିବା। ମୁନା, ତୁ ଏବେ ବେଲୁନ୍‌ଟିକୁ ଫୁଙ୍କି ବଡ଼ କଲୁ। ମୁନା ଫୁଙ୍କିବାକୁ ଲାଗିଲା। ଖୁବ୍ ଜୋର୍ ଦେଇ ଫୁଙ୍କିଲା। ବେଲୁନ୍‌ଟା ଫୁଲି ଫୁଲି ପ୍ରାୟ ବୋତଲ ଆକାରର ହୋଇଗଲା। ଠିକ୍ ସେତିକିବେଳେ ଜେଜେ ମୋସାଏ ବୋତଲ ପଛପାଖରେ ଥିବା କଣାଟିକୁ ଆଙ୍ଗୁଠି ଚାପି ବନ୍ଦ କରି ଦେଲେ ଏବଂ ମୁନାକୁ ଫୁଙ୍କିବା ବନ୍ଦ କରିବାକୁ କହିଲେ। ଆଶ୍ଚର୍ଯ୍ୟର କଥା ମୁନା ମୁହଁରୁ ବାହାର କଲା ପରେ ବି' ବୋତଲ ଭିତରେ ବେଲୁନ୍‌ଟା ସେଇ ଫୁଲିବା ଅବସ୍ଥାରେ ହିଁ ରହିଗଲା। ବେଲୁନ୍‌ର ମୁହଁଟା ଖୋଲା ଅଥଚ ତା ଭିତରୁ ବାୟୁ ଚାଲି ଯାଉନି କି ବେଲୁନ୍ ଫୁସ୍‌କି ଯାଉନି। ଏପରି ଦୃଶ୍ୟ ସତରେ ପିଲାମାନଙ୍କ ପାଇଁ ଥିଲା ବଡ଼ କୌତୂହଳପୂର୍ଣ୍ଣ। ଜେଜେ ମୋସାଏ ଏ ଘଟଣା ମୂଳରେ ଥିବା ବୈଜ୍ଞାନିକ କାରଣଟି କହିବା ପରେ ସେମାନେ ବୁଝି ପାରିଲେ ଏବଂ ଖୁସି ମନରେ ଯେଝା ଘରକୁ ଗଲେ। ❒

# ଗାଡ଼ି ଚାଲେ କେମିତି

ମୁନା ଓ ମିନି ଭାଇ ଭଉଣୀ । ମିନି ଛୋଟ, ପଞ୍ଚମ ଶ୍ରେଣୀରେ ପଢ଼େ । ମୁନାର ନବମ । ବିଜ୍ଞାନ ପାଠ ପ୍ରତି ମୁନାର ଭାରି ଆଗ୍ରହ । ଶ୍ରେଣୀରେ ବିଜ୍ଞାନର ପରୀକ୍ଷାମୂଳକ ପାଠ ଯାହା ପଢ଼ାଯାଏ, ସେ ଘରକୁ ଆସି ସଂଗେ ସଂଗେ ତା'ର ପରୀକ୍ଷା ନିରୀକ୍ଷା କରି ପକାଏ । ସେତକ ନ'କଲା ପର୍ଯ୍ୟନ୍ତ ତା' ଆଖିକୁ ନିଦ ହୁଏନି । ସେ ତା' ପଢ଼ା ଘରଟିକୁ ଗୋଟେ ଛୋଟ ବିଜ୍ଞାନ ପ୍ରୟୋଗ ଶାଳାରେ ପରିଣତ କରି ପକାଇଲାଣି । ତା' ଭିତରେ ସେ ନାନା ପ୍ରକାର ପରୀକ୍ଷା ନଳୀ, କାଚ ଜାର୍, ସ୍ପିରିଟ୍ ଲ୍ୟାମ୍ପ, ମାଗ୍ନିଫାଇଂ ଗ୍ଲାସ୍ । ଆଉରି କେତେ କ'ଣ ବିଜ୍ଞାନ ଉପକରଣ ସଂଗ୍ରହ କରି ରଖିଛି । ବିଜ୍ଞାନ ପ୍ରତି ମୁନାର ଆଗ୍ରହ ଦେଖି ତା' ବାପା ତାକୁ ଏ ଦିଗରେ ସାହାଯ୍ୟ କରନ୍ତି । ଉତ୍ସାହିତ କରନ୍ତି ।

ଦିନେ ମିନି ଓ ମୁନାର ମାମୁ ଆସି ପହଞ୍ଚିଲେ । ସେ ଗୋଟେ ନୂଆ ସ୍କୁଟର ଚଢ଼ି ଆସିଥାନ୍ତି । ମୁନା ସ୍କୁଟର ଚଳାଇବା ଜାଣେ । ସେ ମାମୁଙ୍କ ପାଖରୁ ଚାବିଟା ନେଇ ସ୍କୁଟରରେ ଦାଣ୍ଡଆଡ଼ୁ ଦୁଇଘେରା ମାରି ଆସିଲା । ଏହା ଦେଖି ମିନି ମାମୁଙ୍କୁ ଗେହ୍ଲେଇ କହିଲା, ''ମାମୁ.....ମାମୁ..... ଭାଇଙ୍କ ପରି ମୋତେ ବି ସ୍କୁଟର ଚଲେଇବା ଶିଖେଇ ଦିଅନା ।''

ମାମୁ କହିଲେ, ''ନିଶ୍ଚୟ ଶିଖେଇ ଦେବି; ହେଲେ ମିନି, ତା' ଆଗରୁ ତୋତେ ଗୋଟେ କଥା ଜାଣିବାକୁ ପଡ଼ିବ ।''

ମିନି ଉତ୍କଣ୍ଠାର ସହିତ ପଚାରିଲା, କ'ଣ... ମାମୁ ?''

''ସ୍କୁଟର, ଚଲେଇବା ଆଗରୁ ସ୍କୁଟରଟି କେମିତି ଗଢ଼େ ତାହା ଆମେ ଜାଣିବା ଉଚିତ'' ମାମୁ କହିଲେ ।

ମିନି ଭୂଲତା ନଚାଇ କହିଲା, ହେଃ.... ମୁଁ କ'ଣ ସେ କଥା ଜାଣିନି ଭାବିଛ? ହାଣ୍ଡଲରେ ଲାଗିଥିବା ଏଇ ମୁଠିଟାକୁ ଆକ୍ସିଲିଟର କହନ୍ତି । ଆକ୍ସିଲିଟର ମୋଡ଼ି ଦେଲେ ପରା ସ୍କୁଟର ପିଁ..... କିନା ଗଡ଼ିଯାଏ ।''

ମାମୁ ହୋଃ.....ହୋଃ......ହସି ଉଠି କହିଲେ, ''ଆଲୋ ପାଗଳୀ, ଆକ୍ସିଲିଟର ମୋଡ଼ିଲେ ସ୍କୁଟର ଗଡ଼େ ବୋଲି କିଏ ନଜାଣେ ? କିନ୍ତୁ କେଉଁ ଯାନ୍ତ୍ରିକ କୌଶଳ ଯୋଗୁଁ ସ୍କୁଟର ଚାଲେ, ଜାଣିଛୁ ?''



ମିନି କହିଲା, ''ତାହା ମଧ୍ୟ ମୁଁ ଜାଣିଛି । ଆକ୍ସିଲିଟର ମୋଡ଼ିଲେ ପେଟ୍ରୋଲ ଟାଙ୍କିରୁ ପେଟ୍ରୋଲ ଇଂଜିନ୍‌କୁ ଯାଇ ଜଳିବାକୁ ଲାଗେ । ତା'ରି ବଳରେ ସ୍କୁଟରର ଚକା ଗଡ଼େ ।''

ମୁନା ଏ ପର୍ଯ୍ୟନ୍ତ ଚୁପ୍‌ଚାପ୍ ସବୁ ଶୁଣୁଥିଲା । ମିନିର କାନଟାକୁ ଟିକେ ମୋଡ଼ି ଦେଇ କହିଲା, ''ଆଲୋ ଝୁଣ୍ଟି, ଯେଉଁ ବିଷୟରେ ତୁ ପୂରା ନ ଜାଣିଛୁ, 'ସବ୍‌ଜାନ୍‌ତା' କହି ଫୁଟାଣି ମାରୁଚୁ କାହିଁକି, କହିଲୁ ? ସ୍କୁଟର ଚାଲିବା ଯାନ୍ତ୍ରିକ କୌଶଳ ଯଦି ଜାଣିବାକୁ ଚାହୁଁଛୁ, ଆସ୍, ମୁଁ ତୋତେ ବୁଝାଇ ଦେବି ।''

ଏହା କହି ମୁନା ସ୍କୁଟର ଡିକି ଭିତରୁ ପ୍ଲଗ୍ ଖୋଲିବା ରେଞ୍ଚିଟା ବାହାର କଲା । ସ୍କୁଟରର ଡାହାଣପଟ କଭର ଓହ୍ଲାଇ ପ୍ଲଗ୍‌ଟିକୁ ଖୋଲି ଆଣିଲା । ତା'ପରେ ସେ ତାକୁ ଗୋଟେ ତାର ସହିତ ସଂଯୋଗ କରି ଇଂଜିନ୍ ଦେହରେ ଲଗାଇ ରଖିଲା ଏବଂ କିକ୍ ମାରିବାକୁ ଲାଗିଲା । ମିନିକୁ ପଚାରିଲା, ''ପ୍ଲଗ୍ ମୁହଁରେ ଏବେ କ'ଣ ଦେଖୁଚୁ କହିଲୁ ?''

ମିନି ନଇଁପଡ଼ି କିଛି ସମୟ ଧ୍ୟାନ ସହକାରେ ଦେଖିବା ପରେ କହିଲା, "ଆରେ..... ପ୍ଲଗ୍ ମୁଣ୍ଡରୁ ତ' ଚକ୍.. ଚକ୍ କରି ନିଆଁ ବାହାରୁଛି !"

ଦେଖିଲୁ ତ... ଏବେ ଚାଲ୍, ଗାଡ଼ି କେମିତି ଗଡ଼େ ମୁଁ ତୋତେ ଚିତ୍ର ସାହାଯ୍ୟରେ ବୁଝାଇ ଦେବି ।"

ଭାଇ ଭଉଣୀ ଦୁହେଁ ଯାଇ ପଢ଼ାଘରେ ବସିଲେ । ମୁନା ଚିତ୍ର ଆଙ୍କି ବୁଝାଇବାକୁ ଲାଗିଲା, "ଦେଖ୍...... ଇଂଜିନ୍ କହିଲେ ବେଶି କିଛି ନୁହେଁ, ମୋଟ୍ ଉପରେ ଗୋଟେ ସିଲିଣ୍ଡର ଏବଂ ଗୋଟେ ପିଷ୍ଟନର ଖେଳ । ବାଷ୍ପଚାଳିତ ରେଳ ଇଂଜିନ୍‌ରେ ତୁ ଦେଖିଥିବୁ, ତା' ଆଗ ଚକ ପାଖରେ ଗୋଟେ ଚିକ୍‌କଣ ମୋଟା ଲୁହାଦଣ୍ଡ ବରାବର ଆଗପଛ ହେଉଥାଏ । ତାକୁ କହନ୍ତି ପିଷ୍ଟନ୍ । ପିଷ୍ଟନ୍‌ଟି ସିଲିଣ୍ଡର ଭିତରକୁ ପଶୁଥାଏ ଏବଂ ବାହାରୁଥାଏ । ପିଷ୍ଟନର ଗୋଟିଏ ମୁଣ୍ଡ ରେଳ ଗାଡ଼ିର ଚକ ସହିତ ଖଞ୍ଜା ହେଇଥାଏ । ପିଷ୍ଟନ୍‌ଟି ବାରମ୍ବାର ଆଗପଛ ହେବାଦ୍ୱାରା ଚକ ଘୂରେ । ଠିକ୍ ସେମିତି ଛୋଟ ଆକାରର ଗୋଟେ ପିଷ୍ଟନ୍ ଏବଂ ସିଲିଣ୍ଡର ଆମର ଏ ଗାଡ଼ିମାନଙ୍କର ଅଛି । ଏଇ ଦେଖ, ଏଇଟା ହେଉଛି ସିଲିଣ୍ଡର ଏବଂ ଏଇଟା ପିଷ୍ଟନ୍ । ପିଷ୍ଟନ୍‌ର ଗୋଟେ ମୁଣ୍ଡ ସିଲିଣ୍ଡର ଭିତରେ ତଳ ଉପର ହୁଏ । ଆଉ ମୁଣ୍ଡଟି କବଜା ଆକାରରେ ଖଞ୍ଜା ହୋଇଥାଏ ସ୍କୁଟରର ପଛଚକ ସହିତ । ପିଷ୍ଟନ୍ ବାରମ୍ବାର ଆଗପଛ ହେବା ଦ୍ୱାରା ଚକଟି ଘୂରିବାକୁ ଲାଗେ ।

ମିନି ଉତ୍ସୁକ ହୋଇ ପଚାରିଲା, "ହେଲେ ଭାଇ, ପିଷ୍ଟନଟି ଆଗପଛ ହୁଏ କେମିତି ?"



"ହଁ... ଅସଲ ରହସ୍ୟ ତ ରହିଲା ସେଇଠି । ଦେଖ୍, ପିଷ୍ଟନ୍‌ଟି ସିଲିଣ୍ଡର ଭିତରକୁ ଗୋଟିଏ ପଟୁ ପଶୁଛି । ସିଲିଣ୍ଡର ଆଉ ମୁଣ୍ଡଟି ଟିକିଏ ଅଣ୍ଡାକାର ଭାବେ ନିବୁଜ୍ ଅଛି । ପୂରାପୂରି ନିବୁଜ୍ କହିଲେ ଭୁଲ୍ ହେବ । କାରଣ ସେଇ ପାଖରେ ହିଁ 'ପ୍ଲଗ୍'ଟା

ଲାଗେ, ଯେଉଁଥିରେ ନିଆଁ ବାହାରୁଥିବା ଆମେ ଏବେ ଦେଖିଲେ । ତା' ସହିତ ଆଉ ଗୋଟେ ଛିଦ୍ର ମଧ୍ୟ ସେଠାରେ ଅଛି । ସେ ଛିଦ୍ର ଦେଇ ସିଲିଣ୍ଡର ଭିତରକୁ ପଶେ ପେଟ୍ରୋଲ୍ ଏବଂ ବାୟୁ ।

ଆମେ ଯେତେବେଳେ ଗାଡ଼ିର କିକ୍ ମାରୁ, ପେଟ୍ରୋଲ୍ ଏବଂ ବାୟୁ ଏକାସାଙ୍ଗରେ ସିଲିଣ୍ଡର ଭିତରକୁ ପଶେ । ଠିକ୍ ସେତିକିବେଳେ ପ୍ଲଗ୍‌ରୁ ମଧ୍ୟ ନିଆଁ ବାହାରେ । ପେଟ୍ରୋଲରେ ସଂଗେ ସଂଗେ ନିଆଁ ଧରେ । ନିଆଁ ଧରିବା ଦ୍ୱାରା ତା' ଭିତରେ ଥିବା ବାୟୁ ଗରମ ହୋଇଯାଏ । ଆମେ ଜାଣିଚେ, ବାୟୁ ଗରମ ହେଲେ ପ୍ରସାରିତ ହୁଏ । ପ୍ରସାରିତ ବାୟୁ ପାଇଁ ଅଧିକ ସ୍ଥାନ ଦରକାର ପଡ଼େ । ହେଲେ ସିଲିଣ୍ଡର ତ ଭାରି ମଜଭୁତ । ଚାରିପଟୁ ନିବୁଜ୍ ମଧ୍ୟ । ତା' ଭିତରେ ବାୟୁର ପ୍ରସାରଣ ଘଟିଲେ କାହାକୁ ଠେଲିବ ? ନିଶ୍ଚୟ ପିଷ୍ଟନକୁ । ପିଷ୍ଟନ ପଛକୁ ଠେଲିହେବା ଦ୍ୱାରା ତା' ଅପର ପାଖରେ ଲାଗିଥିବା କବଜା ଚକକୁ ଘୂରାଇବ । ଚକ ଅଳ୍ପ ଘୂରିଗଲେ ପିଷ୍ଟନ ସିଲିଣ୍ଡର ଭିତରେ ପୁଣି ପୂର୍ବ ସ୍ଥାନକୁ ଫେରି ଆସିବ । ଏତିକିବେଳେ ପୁଣି ପେଟ୍ରୋଲ ସିଲିଣ୍ଡର ଭିତରକୁ ପଶେ ଏବଂ ନିଆଁ ଧରେ । ବାୟୁ ପୁଣି ଗରମ ହୋଇ ପ୍ରସାରିତ ହେଲେ ପିଷ୍ଟନକୁ ପଛକୁ ଠେଲେ । ଚକା ଘୂରେ ଏବଂ ପୁଣି ପିଷ୍ଟନ ଆଗକୁ ଆସେ । ଏମିତି ବାରମ୍ବାର ହେବାଦ୍ୱାରା ଚକଟି କ୍ରମଶଃ ଅଧିକରୁ ଅଧିକ ଗତିଶୀଳ ହୁଏ ।''



ମିନି ପଚାରିଲା, ''ଆଛା ଭାଇ, ସିଲିଣ୍ଡର ଭିତରେ କେମିତି ନିଆଁ ଧରେ ଏବଂ ତା'ଦ୍ୱାରା ପିଷ୍ଟନ କିପରି ଠେଲି ହୋଇଯାଏ । ଆମେ ଦେଖି ପାରିବା ?''

ମୁନା କହିଲା, ''ନା.... ଇଂଜିନ୍‌ର ନିବୁଜ୍ କକ୍ଷ ଭିତରେ ଚାଲୁଥିବା ଏ

ଖେଳ ଆମେ ଦେଖି ପାରିବା ନାହିଁ; କିନ୍ତୁ ଏହା କେମିତି ହୁଏ ଗୋଟେ ପରୀକ୍ଷା ଦ୍ୱାରା ମୁଁ ତୋତେ ବୁଝାଇ ଦେବି. ଚାଲ୍ ।''

ଏହା କହି ମୁନା ବହିଥାକ ଉପ୍ରରୁ ତା' ମାଗ୍ନିଫାଇଂ ଗ୍ଲାସ୍‌ଟା ଆଣିଲା । ଗୋଟେ ଛୋଟ ଇଂଜେକ୍‌ସନ୍ ଶିଶି ଏବଂ ତିନୋଟି ଦିଆସିଲି କାଠି ଯୋଗାଡ଼ କଲା । ଦୁହେଁ ବାହାରକୁ ଗଲେ । ସେତେବେଳକୁ ଦିନ ବାରଟା । ଟାଇଁ ଟାଇଁ ଖରା କାଟୁଥାଏ । ବିନୁ ଦିଆସିଲି କାଠିର ମସଲା ଲାଗିଥିବା ମୁଣ୍ଡାଗୁଡ଼ିକୁ ଏକତ୍ର କରି ଖଣ୍ଡେ ସରୁ ସୂତାରେ ବାନ୍ଧି ଦେଲା ଏବଂ ତାକୁ ଶିଶି ଭିତରେ ପୂରାଇ ରଖିଲା । ତା'ପରେ ସେ ଶିଶିର ରବର ଠିପିଟିକୁ ଅଳ୍ପ ଓଦା କରି ହାଲୁକାରେ ଶିଶି ମୁହଁରେ ଲଗାଇ ରଖିଲା । ଶିଶିଟିକୁ ନେଇ ଖରାରେ ରଖିଲା । ତା'ପରେ ସେ ମାଗ୍ନିଫାଇଂ ଗ୍ଲାସ୍‌ଟିକୁ ଶିଶି ନିକଟରେ ସୂର୍ଯ୍ୟ ଆଡ଼କୁ ଦେଖାଇ ଏପରି ଧରିଲା, ସୂର୍ଯ୍ୟକିରଣ ମାଗ୍ନିଫାଇଂ ଗ୍ଲାସ ମଧ୍ୟ ଦେଇ ଶିଶି ଭିତରେ ଥିବା ଦିଆସିଲି କାଠିର ଅଗ୍ରଭାଗରେ କେନ୍ଦ୍ରୀଭୂତ ହେଲା । ମାତ୍ର ଗୋଟେ ମିନିଟ୍ । ହଠାତ୍ ଗୋଟ ଠୋ..... କିନା ଶବ୍ଦରେ ମିନି ଚମକି ପଡ଼ିଲା ।

ମୁନା ମୁଚୁମୁଚୁ ହସି ପଚାରିଲା, ''କ'ଣ ହେଲା.....ମିନି ?''

ମିନି କହିଲା, ''ଶିଶି ଭିତରେ ଥିବା ଦିଆସିଲି କାଠି ହଠାତ୍ ଜଳି ଉଠିଲା । ସଂଗେ ସଂଗେ ଠିପିଟା ଠୋ... କିନା କୁଆଡ଼େ ଛିଟିକି ପଡ଼ିଲା ।''

''ଠିକ୍ କହୁଛୁ, ମାଗ୍ନିଫାଇଂ ଗ୍ଲାସ୍ ଦେଇ ସୂର୍ଯ୍ୟରଶ୍ମି ଯେତେବେଳେ ଦିଆସିଲି କାଠିର ମସଲା ଉପରେ ଠୁଳ ହେଲା, ଦିଆସିଲି କାଠିଗୁଡ଼ିକ ଜଳି ଉଠିଲା । ଶିଶି ଭିତରେ ବାୟୁ ସଂଗେ ସଂଗେ ଉତ୍ତପ୍ତ ହୋଇଗଲା । ଉତ୍ତପ୍ତ ବାୟୁ ଯେତେବେଳେ ପ୍ରସାରିତ ହୋଇ ଅଧିକ ସ୍ଥାନ ଆବଶ୍ୟକ କଲା, ସେ ଠିପିଟିକୁ ଠେଲିଲା । ତେଣୁ ଠିପିଟି ଠୋ... କିନା ଛିଟ୍‌କି ଚାଲିଗଲା ।

ସ୍କୁଟର ଇଂଜିନ୍ ଭିତରେ ମଧ୍ୟ ଠିକ୍ ଏପରି ଘଟଣା ଘଟେ । ଠିପି ଜାଗାରେ ପିଷ୍ଟନଟି ଥିବା ହେତୁ ବାୟୁର ଚାପ ବଳରେ ପିଷ୍ଟନଟି ଠେଲି ହୋଇ ଗାଡ଼ିର ଚକକୁ ଗତିଶୀଳ କରାଏ । ବୁଝିଲୁ ତ ?''

ସବୁ ବୁଝିବା ପରେ ମଧ୍ୟ ମିନି ଆଶ୍ଚର୍ଯ୍ୟରେ ସ୍କୁଟରଟିକୁ ଚାହିଁ ରହିଥାଏ ।



# ଦୁଇଖଣ୍ଡ କାଠିର କରାମତି

ଜେଜେ ଦାଣ୍ଡ ବାରଣ୍ଡାରେ ବସି ପେପର ପଢୁଥିଲେ । ବିଜୁ ସ୍କୁଲରୁ ଫେରି ବହି-ବସ୍ତାନିଟାକୁ ପଢ଼ାଘରେ ଥୋଇଦେଲା । ବେଗରୁ ବାହାର କଲା ଛୋଟ ପ୍ଲାଷ୍ଟିକ୍ ସ୍କେଲଟିଏ । ଘର କବାଟ କୋଣେ ରଖା ହୋଇଥିବା ଗୋଟେ ସଳଖ ବାଉଁଶ ଠେଙ୍ଗା ଧରିଲା । ଯାଇ ଜେଜେଙ୍କ ପାଖରେ ବସିଲା ।

ଜେଜେ ପେପରୁ ଉପର ମୁହଁ ଉଠାଇ ବିଜୁକୁ ଚାହିଁଲେ । ଥଟ୍ଟା କରି କହିଲେ, "କ'ଣ ବିଜୁବାବୁ..., ସ୍କୁଲରୁ ଫେରୁ ଫେରୁ ଠେଙ୍ଗାଟେ ଧରି ଦାଣ୍ଡରେ ବସିଲ ଯେ......, କାହା ଉପରେ ରାଗ ଶୁଝେଇବାର ଅଛି ନା' କଣ ?"

ବିଜୁ ହସି କହିଲା, "ନା ଜେଜେ..... ତୁମକୁ ଗୋଟେ ପ୍ରଶ୍ନ ପଚାରିବାର ଅଛି ।"



"ଆଚ୍ଛା....! ପ୍ରଶ୍ନ ପଚାରିବ ? ଉତ୍ତର ଦେଇ ନ ପାରିଲେ କ'ଣ ଠେଙ୍ଗା ପାହାର ?"

"ଓହୋଃ.... ଜେଜେ, ତମେ ତ ସବୁ କଥାକ ଥଟ୍ଟାରେ ନେଇ ଯାଉଛ । ତମେ ଯଦି ଉତ୍ତର କହି ନ' ପାରିବ, ତା'ହେଲେ ଏ 'ଠେଙ୍ଗା' ତା'ର ଉତ୍ତର ଦେବ, ବୁଝିଲ ।"

ଜେଜେ ଆଶ୍ଚର୍ଯ୍ୟରେ ପଚାରିଲେ, "ଠେଙ୍ଗା, ପୁଣି ଉତ୍ତର ଦେବ.....! ବଡ଼ ବିପଦଜନକ ପ୍ରଶ୍ନ ହୋଇଥିବ ତ ତା'ହେଲେ । ପଚାରିଲ - ପଚାରିଲ, ପ୍ରଶ୍ନଟା ତୁମର କ'ଣ ।"

ବିଜୁ ସାମନା ଗେଟ୍ ଆଡ଼କୁ ଆଙ୍ଗୁଠି ଦେଖାଇ ପଚାରିଲା, "ଜେଜେ.... ଆମ

ଗେଟ୍‌ଠାରୁ ପ୍ରାୟ ପାଞ୍ଚମିଟର ଦୂରରେ, ସେ ଯେଉଁ ଲାଇଟ୍ ଖୁଣ୍ଟଟା ଦେଖୁଛ.... କହି ପାରିବ ତା'ର ସଠିକ୍ ଉଚ୍ଚତା କେତେ ?''

ଜେଜେ କହିଲେ, ''କିହୋ.... ମତେ ତମେ କଣ 'ପଠାଣି ସାମନ୍ତ' ଭାବିଲ? ଦୂରରେ ଥିବା ଜିନିଷଟାକୁ ମାପ-ଚୁପ ନକରି, ଭଲା ତା' ସଠିକ୍ ଉଚ୍ଚତା କେମିତି କହିବି ?''

ବିଜୁ ହସି ହସି କହିଲା, ''ମୁଁ ଜାଣେ ତମେ କହି ପାରିବନି । ହେଲେ ଜେଜେ...., ଯେଉଁ ଜ୍ୟୋତିର୍ବିଜ୍ଞାନୀ ପଠାଣି ସାମନ୍ତଙ୍କ ନାଁ କହିଲ, ସେ ମାତ୍ର ଦୁଇଖଣ୍ଡ କାଠି ସାହାଯ୍ୟରେ ଅନେକ ଦୂରରେ ଥିବା ପାହାଡ଼ ପର୍ବତର ଉଚ୍ଚତା ଜାଣି ପାରୁଥିଲେଟି ?''

ଜେଜେ ପୁଣି ପେପର ଆଡ଼କୁ ମୁହଁ ବୁଲେଇ ନେଇ କହିଲେ, ''ସେ ସବୁଥିରୁ ଆମକୁ କ'ଣ ମିଳିବ କହିଲ ? ଆମ ସମୟରେ ତ ଥିଲା ଗାଁ ଚାଟଶାଳୀ । ଅଙ୍କ କହିଲେ ଓଡ଼ାଙ୍କ, ଫେଡ଼ାଙ୍କ, ଖଯା, ଗୁଣନ ଏମିତି କେତେଟା ପାଠ । ବହିପଢ଼ା କହିଲେ କୋଇଲି, ଗୋପିଭାଷା, ମଥୁରାମଙ୍ଗଳରୁ ଛାନ୍ଦ କେତେଟା ମୁଖସ୍ଥ କରିଦେଲେ ପାଠ ସରିଲା । ତୁମ ପରି ଏତେ ଜ୍ଞାନ-ବିଜ୍ଞାନର ରହସ୍ୟ ଜାଣିବାକୁ ଆମର ସୁବିଧା ଥିଲା କେଉଁଠି ?''

''ହେଲେ ଜେଜେ...... ଆଜି ଯୁଗ ବଦଳିଛି । ଆମେ ହେଲୁ 'ଇନ୍‌ଟରନେଟ୍ ଯୁଗ'ର ପିଲା । ରହସ୍ୟର ସାମାନ୍ୟ ସୁରାକ୍ ମିଳିଗଲେ ଆମେ ନିଜ ବୁଦ୍ଧି ବଳରେ ମାଡ଼ି ଯାଇ ପାରିବୁ ଆଗକୁ । କଥା କଣ କି....... ମୁଁ ବହୁତ ଚିନ୍ତା କରି ଗୋଟେ ସୂତ୍ର ପାଇଛି । ସେ ସୂତ୍ର ବଳରେ ମୁଁ ତୁମକୁ ଏବେ କହି ଦେଇ ପାରିବି ସେ ବତିଖୁଣ୍ଟଟିର ସଠିକ୍ ଉଚ୍ଚତା କେତେ ।''

ଜେଜେ ଏଥର ପେପରଟାକୁ ଥୋଇ ଦେଇ ଝାଡ଼ିଝୁଡ଼ି ହୋଇ ବସିଲେ । କହିଲେ, ''ତମେ ସତ କହୁଚ ବିଜୁ......?''

ବିଜୁ କହିଲା, ''ହଁ ଜେଜେ, ଏଥିପାଇଁ ପଠାଣି ସାମନ୍ତ ଯେମିତି ଦୁଇଖଣ୍ଡ କାଠି ବ୍ୟବହାର କରୁଥିଲେ, ସେମିତି ମୋ ପାଖରେ ମଧ୍ୟ ଦୁଇଟା ଅଛି । ଏଇ ଦେଖ.... ଏହା କହି ସେ ଧରିଥିବା ସ୍କେଲ ଏବଂ ଠେଙ୍ଗାଟିକୁ ଦେଖାଇଲା ଏବଂ କହିଲା ମନେକର ସ୍କେଲଟା ଗୋଟେ ଛୋଟ କାଠି ଏବଂ ଠେଙ୍ଗାଟି ବଡ଼ କାଠି । ଏ ଦୁଇଟା ସାହାଯ୍ୟରେ ଏବେ ମୁଁ ମୋ କାମ ଆରମ୍ଭ କରୁଛି । ତମେ ଏଇଠି ବସି ଦେଖୁଥା ।'' ଏହା କହି ସେ ପ୍ରଥମେ ସ୍କେଲ ସାହାଯ୍ୟରେ ଠେଙ୍ଗାଟାକୁ ମାପିଲା । ଗୋଟେ କାଗଜରେ ତାକୁ ଟିପିଲା । ତା'ପରେ ଠେଙ୍ଗାଟାକୁ ନେଇ ଲାଇଟ୍‌ଖୁଣ୍ଟ ପାଖକୁ ଗଲା । ଖୁଣ୍ଟ ସହିତ ସମାନ୍ତରାଳ ଭାବେ ଠେଙ୍ଗାଟାକୁ କିଛି ଗୋଟେ ଠେସ ଦେଇ ଠିଆ କଲା । ପୁଣି ପୂର୍ବ ସ୍ଥାନକୁ ଫେରି

ଆସି ନିଜେ ଗୋଟେ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହେଲା । ହାତରେ ତା'ର ସ୍କେଲଟା ଥାଏ । ହାତଟାକୁ ସିଧା ଭାବରେ ଆଗକୁ ଲମ୍ବାଇ ଖୁଣ୍ଟ ସହିତ ଗୋଟିଏ ସରଳରେଖାରେ ରଖିଲା । ତା'ପରେ ସେ 'କ୍ୟାମେରାମେନ୍' ପରି ଗୋଟିଏ ଆଖିରେ ସ୍କେଲ ସିଧା, ଆଗକୁ ଅନାଇ ହାତଟାକୁ ଆଗପଛ, ତଳ-ଉପର, ଦି'ଥର କଲା । ପୁଣି ଆସି କାଗଜରେ କିଛି ହରଣ - ଗୁଣନ କଲା । କହିଲା, ''ଜେଜେ....ସେ ଖୁଣ୍ଟର ଉଚ୍ଚତା ଠିକ୍ ଆଠ ମିଟର୍ ।''

ବିଜୁର କାର୍ଯ୍ୟକଳାପ ଦେଖି ଜେଜେ ପୂରା ଭେଳେକା । କହିଲେ, ''ତମେ ମୋ ସହିତ ଥଟ୍ଟା ଖେଳୁନ ତ' ବିଜୁ ! ମୋତେ ତ ଆଦୌ ବିଶ୍ୱାସ ଲାଗୁନି, ଏଡ଼େ ଗହନ ବିଦ୍ୟା ତମେ ଜାଣିଲ କେମିତି ?''

ବିଜୁ ହସି ହସି ଉତ୍ତର ଦେଲା, ''କିଛି ଗହନ ନୁହେଁ ଜେଜେ, ଭାରି ସହଜ । ଟିକିଏ ବୁଦ୍ଧି ଖଟେଇଲେ ତମେ ବି ଜାଣିଯିବ । ମୁଁ କେମିତି ମାପିଲି ଶୁଣ ।'' ପ୍ରଥମେ ମୁଁ ସେ ଠେଙ୍ଗାଟାକୁ ମାପି ଦେଖିଲି, ତା' ଲମ୍ବ ଠିକ୍ ଏକ ମିଟର । ତା'ପରେ ମୁଁ ତାକୁ ନେଇ ଖୁଣ୍ଟ ପାଖରେ, ଖୁଣ୍ଟ ସହିତ ସମାନ୍ତରାଳ ଭାବେ ଠିଆ କଲି । ତା'ପରେ ମୁଁ ଏଠାକୁ ଆସି ସ୍କେଲ ଧରି ଠିଆ ହେଲି । ସ୍କେଲଟାକୁ ଆଖିଠାରୁ ଦୂରକୁ ନେଇ ବସ୍ତୁ, ସ୍କେଲ ଏବଂ ଆଖିକୁ ଗୋଟିଏ ସରଳରେଖା ମଧ୍ୟରେ ମଧ୍ୟ ନିର୍ଦ୍ଦିଷ୍ଟ ବ୍ୟବଧାନ ରହିଲା । ସେହିପରି ଅବସ୍ଥାରେ ମୁଁ ଠେଙ୍ଗାର ଉଚ୍ଚତା ମାପିଲି । ଦୂରରେ ଥିବା ଜିନିଷକୁ ଏହିପରି ଭାବରେ ମାପ କଲେ ଖୁବ୍ ଛୋଟ ଜଣାଯିବ । ତେଣୁ ଏକ ମିଟର ଉଚ୍ଚତା ବିଶିଷ୍ଟ ଠେଙ୍ଗାଟା ହେଲା ମାତ୍ର ତିନି ସେ.ମି. । ସେହିପରି ଲାଇଟ୍ ଖୁଣ୍ଟର ଉଚ୍ଚତା ମଧ୍ୟ ମାପିଲି । ସେ ହେଲା ୨୪ ସେ.ମି. । ଏଠି ଆମେ ଜାଣିଲେ ଠେଙ୍ଗାର ଉଚ୍ଚତା ଯାହା, ଲାଇଟ୍ ଖୁଣ୍ଟର ଉଚ୍ଚତା ତା'ର ଏଗାର ଗୁଣ । ଆମେ ଜାଣିଛେ, ଠେଙ୍ଗାର ପ୍ରକୃତ ଉଚ୍ଚତା ଏକ ମିଟର । ସେ ହିସାବରେ ଲାଇଟ ଖୁଣ୍ଟର ପ୍ରକୃତ ଉଚ୍ଚତା ଏଗାର ମିଟର । ଏଥିରେ ଆଉ କଠିଣ ବିଦ୍ୟା କ'ଣ ରହିଲା କୁହ ?''

ଜେଜେ କହିଲେ, ''ଆରେ.... ସତେତ ! ବୁଝିଲେ ତ' ବଡ଼ ସହଜ । କିନ୍ତୁ ମୁଁ ବୁଢ଼ାଟେ ହେଲିଣି ଏତେ ସହଜ କଥାଟା ଆଜି ପର୍ଯ୍ୟନ୍ତ କେମିତି ଜାଣି ନଥିଲି । ମୁଁ ଭାବୁଛି, ପଠାଣି ସାମନ୍ତ ମଧ୍ୟ ଦୂର ଜିନିଷକୁ ଠିକ୍ ଏମିତି ମାପୁଥିଲେ ।''

ବିଜୁ କହିଲା, ''ସେ କେମିତି ମାପୁଥିଲେ ମୁଁ କହି ପାରିବିନି; କିନ୍ତୁ ଦୂରରେ ଥିବା ଯେକୌଣସି ଉଚ୍ଚତାକୁ ଏ ଉପାୟରେ ମପା ଯାଇପାରେ ।''

ଜେଜେ ବିଜୁର ପିଠି ଥାପୁଡ଼େଇ କହିଲେ, ''ବାଃ.... ଆମ ବିଜୁବାବୁଙ୍କ ମୁଣ୍ଡରେ ଏତେ ବୁଦ୍ଧି ।''





ସୁରେନ୍ଦ୍ରନାଥ ସାହୁ

ଜନ୍ମ : ୧୭.୧୧.୧୯୫୧
ସ୍ଥାନ : ଶ୍ରୀ ଶ୍ରୀ ସିଦ୍ଧଭୈରବୀ ପୀଠ ମନ୍ତ୍ରୀଡ଼ି (ବ୍ରହ୍ମପୁର)
ସଂପ୍ରତି : ଜାତୀୟ ତାପଜ ବିଦ୍ୟୁତ୍ ନିଗମ (ତାଳଚେର ଥର୍ମାଲ୍ ଶାଖା)ରେ ଅବସ୍ଥାପିତ ।

ବିଜ୍ଞାନଧର୍ମୀ କିଶୋର ସାହିତ୍ୟକୁ କୌତୁହଳୋଦ୍ଦୀପକ ଭାବେ ପରିବେଷଣ କରି ଆଗାମୀ ପିଢ଼ିର ପାଠକମାନଙ୍କୁ ବିଜ୍ଞାନାଭିମୁଖୀ କରିବା ପାଇଁ ଲେଖକ ଅଙ୍ଗୀକାରବଦ୍ଧ ।

*ଆମ ଆଗାମୀ ଆକର୍ଷଣ :*

ଗପ ପଢ଼ିବ ବୁଦ୍ଧି ବଢ଼ିବ (ବୁଦ୍ଧି ପାଇଁ ବ୍ୟାୟାମ)
ଅଲଟ୍ରାମୋଟ୍ (ବିଜ୍ଞାନ ଯୁଗର ଚମତ୍କାର)
ମେଜିକ୍ ମେସିନ୍ (ବିଜ୍ଞାନ ଯୁଗର ବିସ୍ମୟ)
୫୧ଟି ବିଜ୍ଞାନ ଖେଳ


ISBN 81-7704-062-6
9788177040623







ସୁଧା ପ୍ରକାଶନ